Paper used for the Printing of this Book was
made available by the Govt. of Orissa
at Concessional rates.

# ହିତ-କଥା

( ତୃତୀୟ ଓ ଚତୁର୍ଥ ଭାଗ ଏକତ୍ର )

୰ ରାମଚନ୍ଦ୍ର ଆଚାର୍ଯ୍ୟ, ବି. ଏ. ଙ୍କ
କର୍ତ୍ତୃକ ସଙ୍କଳିତ

୧୯୭୮

ପ୍ରକାଶକ :

ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର

ବିନୋଦବିହାରୀ, କଟକ-୨

ମୂଲ୍ୟ ଛଅଟଙ୍କା

# ସୂଚୀ

## ତୃତୀୟ ଭାଗ ( ବିଗ୍ରହ )



## ଚତୁର୍ଥ ଭାଗ ( ସନ୍ଧି )

# ହିତ କଥା

## ଦ୍ୱିତୀୟ ଭାଗ

## — ବିଗ୍ରହ —

ପାଟଳୀପୁତ୍ରର ରାଜପୁତ୍ରଗଣ ପଣ୍ଡିତ ଶ୍ରୀ ବିଷ୍ଣୁ ଶର୍ମାଙ୍କ ମୁଖରୁ 'ମିତ୍ରଲାଭ' ଓ 'ସୁହୃଦ୍ଭେଦ' ଶୁଣି ପରମ ପୁଲକିତ ହେଲେ । ସେମାନେ କହିଲେ, 'ଗୁରୁଦେବ ! ଆପଣଙ୍କ କୃପାରୁ ଆମ୍ଭେମାନେ 'ମିତ୍ରଲାଭ' ପ୍ରକରଣର ମୂଳନୀତି ହୃଦୟଙ୍ଗମ କରି ପାରିଅଛୁଁ । ସେଥିରୁ ସ୍ପଷ୍ଟ ବୁଝି ପାରିଲୁଁ ଯେ ଜଗତ କେବଳ ପ୍ରେମର ବନ୍ଧନ ଅଟେ । ଜୀବଗଣ ମଧ୍ୟରେ ପ୍ରେମର ମିଳନ ହିଁ ପ୍ରେମମୟ ପରମେଶ୍ୱରଙ୍କର ଏକମାତ୍ର ଉଦ୍ଦେଶ୍ୟ । ପ୍ରେମରେ ଶକ୍ତି, ପ୍ରେମରେ ଭକ୍ତି, ପ୍ରେମରେ ମୁକ୍ତି ଓ ପ୍ରେମରେ ହିଁ ଶାନ୍ତି । ମିତ୍ରଲାଭ ବ୍ୟତୀତ ପ୍ରେମ-ଧନ-ଲାଭ ବିଡ଼ମ୍ବନା ମାତ୍ର । କେଉଁ କେଉଁ ପାପରୁ ସେହି ପ୍ରେମ-ବନ୍ଧନ ଛିନ୍ନ ହୁଏ, 'ସୁହୃଦ୍ଭେଦ' ପ୍ରବନ୍ଧରୁ ତାହାର ସ୍ପଷ୍ଟ ପରିଚୟ ପାଇଅଛୁଁ । ବର୍ତ୍ତମାନ ଯୁଦ୍ଧ ସମ୍ବନ୍ଧରେ କିଛି ଶୁଣିବାକୁ ଆମ୍ଭମାନଙ୍କର କୌତୂହଳ ଜାତ ହୋଇଅଛି ।' ବିଷ୍ଣୁଶର୍ମା କହିଲେ, 'ବିଗ୍ରହ-ବିବରଣୀ' ଶୁଣିବାକୁ କୁତୂହଳୀ ହେବା ରାଜପୁତ୍ର-ମାନଙ୍କ ପକ୍ଷରେ ଅବଶ୍ୟ ସ୍ୱାଭାବିକ, ସୁତରାଂ ତୁମ୍ଭମାନଙ୍କ ଅଭିଳଷିତ ବିଷୟ କହୁଅଛି, ଶୁଣ । ତାହାର ପ୍ରଥମ ଶ୍ଳୋକ :—

ହଂସ ଆଉ ମୟୂରଙ୍କ ସଂଗ୍ରାମ ଭୂମୁଳ,
ବଳେ ସମର୍ଥ୍ୟ ଥିଲେ ହୁଇ ପକ୍ଷ ସମତୁଲ;
ଶତ୍ରୁଗୃହେ ପଶି କାକ ଜନ୍ମାଇ ବିଶ୍ୱାସ
ଘଟାଇଲା ହଂସଦଳେ ଶେଷେ ସର୍ବନାଶ ।

ରାଜପୁତ୍ରଗଣ ପଚ୍ଛିଲେ, 'ତାହା କିପରି ଘଟିଲା ?'

ବିଷ୍ଣୁ ଶର୍ମା କହିଲେ :—

---

## ହଂସ ଓ ମୟୂରମାନଙ୍କ କଥାରମ୍ଭ

କର୍ପୂରଦ୍ୱୀପରେ ଏକ ବୃହତ୍ ସରୋବର ଅଛି; ତାର ନାମ ପଦ୍ମକେଳି । ସେଠାରେ ହିରଣ୍ୟଗର୍ଭ ନାମକ ଏକ ରାଜହଂସ ବାସ କରେ । ଜଳଚର ପକ୍ଷୀମାନେ ମିଳିତ ହୋଇ ହିରଣ୍ୟଗର୍ଭଙ୍କୁ ରାଜପଦରେ ଅଭିଷିକ୍ତ କଲେ । କାରଣ, ଯାହାର ଶାସନରେ ସମସ୍ତେ ସୁପଥରେ ଚାଲନ୍ତି, ସେପରି ରାଜା ନ ଥିଲେ କର୍ଣ୍ଣଧାରହୀନ ତରଣୀ ତୁଲ୍ୟ ଲୋକ-ସମାଜ ଦୁର୍ଗତି ପ୍ରାପ୍ତ ହୁଏ । ପ୍ରଜାପାଳନ ରାଜାର ଧର୍ମ ଏବଂ ରାଜାର ବଳ-ବର୍ଦ୍ଧନ ପ୍ରଜାମାନଙ୍କର କର୍ତ୍ତବ୍ୟ । କିନ୍ତୁ ବର୍ଦ୍ଧନ ଅପେକ୍ଷା ରକ୍ଷା ଶ୍ରେଷ୍ଠତର, ଯେହେତୁ ତାର ଅଭାବରେ ସତ୍ ଅସତ୍‌ରେ ପରିଣତ ହୋଇଥାଏ ।

ଦିନେ ହିରଣ୍ୟଗର୍ଭ ନିଜ ପରିବାର ସହିତ ସୁବିସ୍ତୃତ ପଦ୍ମନିର୍ମିତ ପର୍ଯ୍ୟଙ୍କରେ ବସି ଅପୂର୍ବ ଆନନ୍ଦ ଉପଭୋଗ କରୁଥିଲା ।

---

ସ୍ୱଧର୍ମରେ ରାଜା ପ୍ରଜା କରିବ ପାଳନ;

ସଜ୍ଜିତ କରି ସେହି ଶସ୍ୟକ୍ଷେତ୍ରର ଏକ ଗୁପ୍ତ ସ୍ଥାନରେ ଅବସ୍ଥିତ ହୋଇ ରହିଲା । ସେହି ବ୍ୟାଘ୍ର-ଚର୍ମାବୃତ ଗର୍ଦ୍ଦଭ ସ୍ୱଚ୍ଛନ୍ଦଭାବରେ ଶସ୍ୟ ଭୋଜନ କରି ଅତଏବ ବଳିଷ୍ଠ ଓ ହୃଷ୍ଟପୁଷ୍ଟ ହୋଇଥିଲା । ସେ ଦୂରରୁ କୃଷକକୁ ଦେଖି ତାହାଙ୍କୁ ନିଜ ଜାତିର ଭାବି ଉଚ୍ଚ ସ୍ୱରରେ ରଡ଼ି ଛାଡ଼ି ଛାଡ଼ି ତାହା ଆଡ଼କୁ ଧାଇଁଗଲା । ସେ ପ୍ରକୃତରେ ଗର୍ଦ୍ଦଭ ବୋଲି ଜାଣିବାରେ ଶସ୍ୟରକ୍ଷକର ଆଉ ବାକି ରହିଲା ନାହିଁ । ଅତଏବ ସେ ଗର୍ଦ୍ଦଭକୁ ଅନାୟାସରେ ବଧ କଲା । ସେହି କାରଣରୁ ମୁଁ କହୁଅଛି ଯେ—

'ଆତ୍ମ-ବଳ ପର-ବଳ ନ ବୁଝେ ଯେ ଜନ,
ଶତ୍ରୁ ହସ୍ତେ ଶାସ୍ତି ତାର ହୁଏ ବିଲକ୍ଷଣ ।'

ବକ—ତା'ପରେ ସେହି ପକ୍ଷୀମାନେ କହିଲେ—'ଆରେ ପାପିଷ୍ଠ ଦୁଷ୍ଟ ବକ ! ତୁ ଆମ୍ଭ ରାଜ୍ୟରେ ବିଚରଣ କରି ଆମ୍ଭ ରାଜାଙ୍କୁ ହିଁ ଗାଳି ଦେଉଅଛୁ ! ଏହା ଆମ୍ଭମାନଙ୍କର ନିତାନ୍ତ ଅସହ୍ୟ ।' ଏହା କହି ସେମାନେ ଚଞ୍ଚୁଦ୍ୱାରା ମୋତେ ପ୍ରହାର କରି କ୍ରୋଧରେ କହିଲେ—'ଦେଖ ରେ ମୂର୍ଖ ! ତୁମ୍ଭମାନଙ୍କର ରାଜା ସେହି ରାଜହଂସ ନିତାନ୍ତ ନିସ୍ତେଜ, ଅତ ଏବ ରାଜପଦରେ ତାହାର ଅଧିକାର ନାହିଁ । କାରଣ, ଲକ୍ଷ୍ମୀ ହସ୍ତଗତ ହେଲେ ସୁଦ୍ଧା ଅତ୍ୟନ୍ତ ନିସ୍ତେଜ ବ୍ୟକ୍ତି ତାହା ରକ୍ଷା କରି ପାରେ ନାହିଁ । ତେବେ ସେପରି ଲୋକ ଶାସନ କରିବ କିପରି ? ପୁଣି ତାହାର ରାଜ୍ୟ ବା କଣ ? ତୁ କୂପମଣ୍ଡୂକ; ସେହି କାରଣରୁ ତାହାର ଆଶ୍ରୟ ଗ୍ରହଣ କରିବା ସକାଶେ ଆମ୍ଭମାନଙ୍କୁ ଉପଦେଶ ଦେଉଅଛୁ । ସମସ୍ତେ ଫଳ ଓ ଛାୟା ଥିବା ବୃକ୍ଷର ଆଶ୍ରୟ ନେଇଥାନ୍ତି । ସେହି ବୃକ୍ଷରେ ଦୈବାତ୍ ଫଳ ନ ହେଲେହେଁ

---

ମଙ୍ଗଳ ନ ହୁଏ, କିନ୍ତୁ ଘଟେ ବଡ଼ କ୍ଷତି ।

କେଉଁ ତାର ସୁଶୀତଳ ଛାୟା ଛାଡ଼ିବ କି ? ନୀଚ-ସଂସର୍ଗ ନିଷ୍ଫଳ, ତେଣୁ ଅସୁନ୍ଦର ଓ ଅନୁଚିତ । ସର୍ବଦା ମହତ୍ ବ୍ୟକ୍ତିର ଆଶ୍ରୟ ଗ୍ରହଣ କରିବା ହିଁ ଶ୍ରେୟସ୍କର । ଶୁଣ୍ଡିକ ହସ୍ତରେ ନିର୍ମଳ ଜଳ ଥିଲେ ମଧ୍ୟ ଲୋକେ ଯେପରି ତାହା ମଦ୍ୟ ବୋଲି ଘୃଣା କରନ୍ତି, ସେପରି ଭଦ୍ରଲୋକ ଇତର ସଂସର୍ଗରେ ରହିଲେ ଲୋକେ ତାହାକୁ ଇତର ଲୋକ ବୋଲି ଜ୍ଞାନ କରି ତାହା ପ୍ରତି ଅନାଦର ଦେଖାଇଥାନ୍ତି । ଅତଏବ ଇତର ଲୋକର କୌଣସି ସଂସ୍ରବରେ ରହିବା ଭଦ୍ରଲୋକର କଦାପି ଉଚିତ ନୁହେ । ସିଂହ କୃପା କରି ଆଶ୍ରୟ ଦେଲେ ଛେଳି ମଧ୍ୟ ନିର୍ଭୟ ହୋଇ ବନରେ ବୁଲେ । ଦେଖ, ଶ୍ରୀରାମଚନ୍ଦ୍ରଙ୍କ ପଦାଶ୍ରୟ ଗ୍ରହଣ କରି ବିଭୀଷଣ ଲଙ୍କାର ରାଜା ହୋଇ ପାରିଥିଲା । ଆଶ୍ରୟର ଦୋଷ ବା ଗୁଣ ଅନୁସାରେ ବସ୍ତୁ ବା ବ୍ୟକ୍ତି ଦୋଷ ବା ଗୁଣ ପ୍ରାପ୍ତ ହୋଇଥାଏ । ଦେଖ, ହସ୍ତିର ଆକାର ଅତି ପ୍ରକାଣ୍ଡ ହେଲେହେଁ ତାହା ଯେପରି କ୍ଷୁଦ୍ର ଦର୍ପଣ ମଧ୍ୟରେ ପ୍ରତିବିମ୍ବିତ ହେଲେ କ୍ଷୁଦ୍ର ଦେଖାଯାଏ, ସେପରି ନୀଚର ଆଶ୍ରୟରେ ରହିଲେ ବଡ଼ଲୋକ ମଧ୍ୟ ନୀଚପ୍ରକୃତି ପ୍ରାପ୍ତ ହୋଇଥାଏ । ବିଶେଷତଃ ଲୋକେ ପରାକ୍ରମଶାଳୀ ରାଜାର ନାମ ଧରି ଜୟଲାଭ କରିଥାନ୍ତି । ଥରେ ଶଶକମାନେ ଚନ୍ଦ୍ରଙ୍କ ନାମ ଧରି ନିରାପଦରେ ବାସ କରିଥିଲେ ।’

ମୁଁ ପଚାରିଲି—‘କିପରି ?’

ପକ୍ଷୀମାନେ କହିଲେ :—

———

ସୁଜନ ହିଁ ହୁଏ ଉପଦେଶର ଭାଜନ;
ଉପଦେଶଯୋଗ୍ୟ କେବେ ନ ହୁଏ କୁଜନ ।

## ହସ୍ତୀ ଓ ଶଶକ

ଥରେ ବର୍ଷାକାଳରେ ମଧ୍ୟ ବୃଷ୍ଟି ନ ହେବାରୁ ହସ୍ତୀମାନେ ତୃଷାର୍ତ୍ତ ହୋଇ ଯୂଥପତିକୁ ଯାଇ ଜଣାଇଲେ—'ପ୍ରଭୋ ! ଆମ୍ଭମାନଙ୍କ ଜୀବନ ରକ୍ଷାର ଉପାୟ କଣ ? ବର୍ତ୍ତମାନ ଏପରି ଏକ ସ୍ଥାନ ନାହିଁ, ଯେଉଁଠାରେ କ୍ଷୁଦ୍ର ଜନ୍ତୁମାନେ ମଧ୍ୟ ସ୍ନାନ କରି ପାରିବେ । ସ୍ନାନ, ଅଭାବରେ ଆମ୍ଭେମାନେ ବିଶେଷ କ୍ଳେଶ ପାଇ ଅନ୍ଧପ୍ରାୟ ହୋଇଅଛୁଁ, କେଉଁଠାକୁ ଯିବୁଁ ? କଣ କରିବୁଁ ? ଉପାୟ କହନ୍ତୁ ।'

ଗଜରାଜ ସେମାନଙ୍କୁ କିଛି ଦୂରରେ ନେଇ ଗୋଟିଏ ନିର୍ମଳ ସରୋବର ଦେଖାଇ ଦେଲା । ହସ୍ତୀମାନେ ପ୍ରତ୍ୟହ ସେଠାରେ ଯାଇ ସ୍ନାନ କରୁଥାନ୍ତି । ସେମାନଙ୍କ ପଦାଘାତରେ ସେହି ସରୋବର-ତୀରରେ ଥିବା ଶଶକ ସକଳ କ୍ରମଶଃ ଦଳିତ ହେବାକୁ ଲାଗିଲେ । ପରେ ଶିଳୀମୁଖ ନାମକ ଶଶକ ଭାବିଲା 'ଏହି ତୃଷାର୍ତ୍ତ ହସ୍ତୀଦଳ ପ୍ରତିଦିନ ଏଠାକୁ ଆସିବେ । ଯେପରି ଦେଖାଯାଉଛି, ଶଶକକୁଳ ସବଂଶରେ ଯେ ବିନଷ୍ଟ ହେବେ, ଏଥିରେ ଆଉ ସନ୍ଦେହ ନାହିଁ ।' ଏହା ଭାବି ଶଶକମାନଙ୍କୁ ତାହା ଜଣାଇଲା ଏବଂ ସେମାନଙ୍କ ନିକଟରେ ପ୍ରତିଜ୍ଞାବଦ୍ଧ ହେଲା ଯେ, ସେ ଅଚିରେ ଏଥିର ପ୍ରତିକାର କରିବ । ପରେ ସେ ପ୍ରତିଜ୍ଞା ପାଳନ କରିବା ନିମିତ୍ତ ସେଠାରୁ ପ୍ରସ୍ଥାନ କଲା ।

ସେ ମାର୍ଗରେ ଯାଉଁ ଯାଉଁ ଭାବିଲା—'ମୁଁ ଗଜପତି ନିକଟରେ ଯାଇ କିପରି ମୋର ବକ୍ତବ୍ୟ ବିଷୟ ପ୍ରକାଶ କରିବି ? କାରଣ, ଯଦ୍ୟପି ହସ୍ତୀ ଆସି ଶୁଣ୍ଢାର ସହିତ ଶରୀର ସ୍ପର୍ଶ କରେ, ତଥାପି ମନରେ

ପ୍ରାଣହାନିର ଭୟ ଜାତ ହୋଇଥାଏ । ସର୍ପ ଆଘ୍ରାଣ କରିବା ମାତ୍ରେ ମୃତ୍ୟୁ-ଶଙ୍କା ହୁଏ । ରାଜା ଅତି ଯତ୍ନରେ ପାଳନ କଲେ ହେଁ ଏବଂ ଦୁଷ୍ଟଲୋକ ହସି ମଧୁର କଥା କହିଲେ ସୁଦ୍ଧା, ସେମାନଙ୍କ ପକ୍ଷରୁ ଅନିଷ୍ଟ ଘଟିବାର ଅସମ୍ଭବ ନୁହେଁ । ଅତଏବ ହସ୍ତୀ, ସର୍ପ, ରାଜା ଓ ଦୁର୍ଜନ—ଏମାନେ ଅତିଶୟ ପ୍ରସନ୍ନ ଭାବ ପ୍ରକାଶ କଲେ ମଧ୍ୟ ଏମାନଙ୍କର ସ୍ୱଭାବରେ ବିଶ୍ୱାସ କରିବା ଏକାନ୍ତ ଅନୁଚିତ । ଏମାନେ ହଠାତ୍ ଭୀଷଣ ଭାବ ଧାରଣ କଲେ ଲୋକଙ୍କର ପ୍ରାଣନାଶ କରିଥାନ୍ତି । ଏମାନଙ୍କ ମନୋଗତ ଭାବ ବୁଝିବା କଷ୍ଟକର । ଅତଏବ ମୁଁ ପର୍ବତ ଶିଖରକୁ ଉଠି ଯୂଥପତିଙ୍କୁ ପ୍ରଣାମ କରି ସକଳ ବିଷୟ ଜଣାଇବି ।’

ଶିଳୀମୁଖଙ୍କୁ ଦେଖିବାକ୍ଷଣି ଗଜରାଜ ପଚାରିଲେ—‘କିଏ ତୁମ୍ଭେ ? କେଉଁଠାରୁ କି ଉଦ୍ଦେଶ୍ୟରେ ଆସିଅଛ ?’

ଶଶକ—ମୁଁ ଜଣେ ଦୂତ । ଭଗବାନ୍ ଚନ୍ଦ୍ର ମୋତେ ଆପଣଙ୍କ ନିକଟକୁ ପଠାଇଅଛନ୍ତି ।

ଯୂଥପତି—କହିଲୁ ପଠାଇଅଛନ୍ତି ?

ଶଶକ—ବିପଦରେ ପଡ଼ି ସୁଦ୍ଧା ଦୂତ କଦାପି ମିଥ୍ୟା କହେ ନାହିଁ । ନିର୍ଭୟଚିତ୍ତରେ ସତ୍ୟକଥା କହିବା ତାହାର ଧର୍ମ । ଅତଏବ ତାଙ୍କର ଆଦେଶ ଜଣାଉଛି, ଶୁଣନ୍ତୁ । ପ୍ରଭୁ କହି ପଠାଇଛନ୍ତି— ‘ଏହି ଚନ୍ଦ୍ର ସରୋବରର ରକ୍ଷକ ଶଶକସକଳ ମୋର ପରିଜନ । ସେହି କାରଣରୁ ମୁଁ ଜଗତରେ ‘ଶଶାଙ୍କ’ ନାମରେ ପରିଚିତ । ଶୁଣିପାରୁଛି, ତୁମ୍ଭେ ପ୍ରତ୍ୟହ ସେମାନଙ୍କୁ ପଦଦଳିତ କରୁଅଛ । ଏପରି କରିବା ତୁମ୍ଭର ଅନୁଚିତ ।’

---

ଆତ୍ମ-ବଳ ପର-ବଳ ନ ବୁଝେ ଯେ ଜନ,

ଶଶକ ମୁଖରୁ ଏହି କଥା ଶୁଣିବାମାତ୍ରେ ଯୂଥପତିର ଭୟ ଆଉ ସୀମା ମାନିଲା ନାହିଁ । ସେ ବିନୀତ ହୋଇ କହିଲା—'ଦେବ ! ଆମ୍ଭେମାନେ ନ ଜାଣି ଏହି କାର୍ଯ୍ୟ କରିଅଛୁଁ । ଆଉ କେବେ ଏହି ସରୋବରକୁ ଯିବୁ ନାହିଁ । କ୍ଷମା କରିବେ ।'

ଶଶକ କହିଲା—'ଭଗବାନ୍ ଚନ୍ଦ୍ର ଅତିଶଯ୍ୟ ରାଗରେ କମ୍ପିତ-କଳେବର ହୋଇ ଏହି ସରୋବରରେ ବାସ କରୁଛନ୍ତି । ଆପଣ ଥରେ ଯାଇ ତାହାଙ୍କୁ ପ୍ରଣାମପୂର୍ବକ ପ୍ରସନ୍ନ କରି ଆସନ୍ତୁ ।'

ଶଶକ ସେହି ରାତିରେ ଯୂଥପତିକୁ ସଙ୍ଗେ ଧରି ଯାଇ ସରୋବର ଜଳରେ ତାହାକୁ ଚଞ୍ଚଳ ଚନ୍ଦ୍ରବିମ୍ବ ଦେଖାଇଲା ଏବଂ ତାହାକୁ ପ୍ରଣାମ କରିବାକୁ କହି ଚନ୍ଦ୍ରବିମ୍ବକୁ ଲକ୍ଷ୍ୟ କରି କହିଲା—'ପ୍ରଭୋ ! ଏ ନ ଜାଣି ଅପରାଧ କରିଅଛନ୍ତି; ଅତଏବ ଏହାଙ୍କୁ କ୍ଷମା କରନ୍ତୁ ।' ଏହା କହି ସେ ଗଜରାଜକୁ ବିଦାୟ ଦେଲା ।

ଏହି କାରଣରୁ ହିଁ ଆମ୍ଭେମାନେ କହୁଅଛୁଁ ଯେ ଲୋକେ ପ୍ରବଳପ୍ରତାପ ରାଜାଙ୍କର ନାମ ଧରି ବିପଦରୁ ଉଦ୍ଧାର ପାଇଥାନ୍ତି ।

ତାହା ଶୁଣି ମୁଁ କହିଲି 'ଆମ୍ଭମାନଙ୍କ ମହାରାଜ ସେହି ରାଜହଂସ ପ୍ରବଳପ୍ରତାପ ଓ ଅତ୍ୟନ୍ତ ଗୁଣଯୁକ୍ତ ପାତ୍ର । ସାମାନ୍ୟ ରାଜ୍ୟର କଥା କାହିଁକି, ତ୍ରୈଲୋକ୍ୟରେ ମଧ୍ୟ ଅଧୀଶ୍ୱର ହେବାର ଯୋଗ୍ୟ ।'

ପକ୍ଷୀମାନେ କହିଲେ, 'ରେ ଦୁଷ୍ଟ ! ତୁ କାହା ଆଦେଶରେ ଆମ ରାଜ୍ୟରେ ଆସି ବିଚରଣ କରୁଅଛୁ ?' ଏହା କହି ସେମାନେ ମୋତେ ଧରି ଚିତ୍ରବର୍ଣ୍ଣ ନିକଟକୁ ଗଲେ । ସେମାନେ ରାଜାଙ୍କୁ

---

ଶତ୍ରୁ-ହସ୍ତେ ଶାସ୍ତି ତାର ହୁଏ ବିଲକ୍ଷଣ ।

ପ୍ରଣାମ କରି କହିଲେ—'ମହାରାଜ, ଏହି ଦୁଷ୍ଟ ବକ ଆମ ଦେଶରେ ଭ୍ରମଣ କରି ଆପଣଙ୍କର ନିନ୍ଦା କରୁଅଛି ।'

ଚିତ୍ରବର୍ଣ୍ଣ ପଚାରିଲେ—'ଏ କିଏ ? କେଉଁଠାରୁ ଆସିଅଛି ?'

ପକ୍ଷୀମାନେ କହିଲେ—'ଏ ହିରଣ୍ୟଗର୍ଭ ନାମକ ରାଜହଂସର ଅନୁଚର । କର୍ପୂରଦ୍ୱୀପରୁ ଆସିଅଛି ।'

ପରେ ଗୃଧ୍ରମନ୍ତ୍ରୀ ମୋତେ ପଚାରିଲେ—'ତୁମ ରାଜ୍ୟର ପ୍ରଧାନ ମନ୍ତ୍ରୀ କିଏ ?' ମୁଁ କହିଲି—'ସର୍ବଶାସ୍ତ୍ରପାରଦର୍ଶୀ ସର୍ବଜ୍ଞ ନାମକ ଚକ୍ରବାକ ।' ଗୃଧ୍ର କହିଲା—'ହଁ, ସେ ତୁମ ରାଜାର ସ୍ୱଦେଶୀୟ, ଅତଏବ ମନ୍ତ୍ରୀପଦର ଯୋଗ୍ୟପାତ୍ର । କାରଣ ଯେଉଁ ବ୍ୟକ୍ତି କୁଳ ଓ ଶୀଳରେ ଶ୍ରେଷ୍ଠ, ପୁରୁଷାନୁକ୍ରମରେ ବିଶ୍ୱାସଯୋଗ୍ୟ ଓ ପ୍ରତିଷ୍ଠାଭାଜନ, ଯେ ସକଳ ଶାସ୍ତ୍ରରେ ବିଚକ୍ଷଣ ଓ ରାଜମାତ୍ରିକପୂର୍ଣ୍ଣ, ଯାହାର ଚରିତ୍ରରେ ବ୍ୟଭିଚାର ବା ବ୍ୟସନ କଦାପି ସ୍ଥାନ ପାଏନାହିଁ ଏବଂ ଯେ ସୁକୌଶଳରେ ସକଳ କାର୍ଯ୍ୟ ସାଧନ କରିପାରେ, ସେପରି ସ୍ୱଦେଶବାସୀ ଯୋଗ୍ୟ ବ୍ୟକ୍ତିକୁ ମନ୍ତ୍ରିପଦରେ ନିଯୁକ୍ତ କରିବା ରାଜାର ପ୍ରଧାନ କର୍ତ୍ତବ୍ୟ ।'

ସେତେବେଳେ ଶୁକ ଚିତ୍ରବର୍ଣ୍ଣଙ୍କୁ କହିଲା—'ଦେବ ! କର୍ପୂରଦ୍ୱୀପ ପ୍ରଭୃତି କ୍ଷୁଦ୍ର କ୍ଷୁଦ୍ର ଦ୍ୱୀପ ସକଳ ଜମ୍ବୁଦ୍ୱୀପର ଅନ୍ତର୍ଗତ । ସୁତରାଂ ଏହି ସମସ୍ତ ଦ୍ୱୀପରେ ମହାରାଜାଙ୍କର ପୂର୍ଣ୍ଣ ଅଧିକାର ।''

ରାଜା କହିଲା—'ଯଥାର୍ଥ କହୁଅଛ । ରାଜା, ଉନ୍ମତ୍ତ ବ୍ୟକ୍ତି, ବାଳକ, ସ୍ତ୍ରୀ ଓ ଧନ-ମତ୍ତ ଲୋକ—ଏମାନେ ଦୁର୍ଲ୍ଲଭ ପଦାର୍ଥ ପାଇବା ପାଇଁ ମଧ୍ୟ କାମନା କରିଥାନ୍ତି । ତେବେ ଯାହା ସାଧ୍ୟ ଓ ସୁଲଭ,

---

ଦୁର୍ଜ୍ଜନ ଆପଣା ଦୋଷେ ମନ୍ଦ କର୍ମ କରେ,

ତାହା ଲାଭ କରିବା ନିମିତ୍ତ କାଙ୍କ୍ଷା ବା ପ୍ରବୃତ୍ତି ନ ଜନ୍ମିବ ? ଅତଏବ ଅନାୟାସଲଭ୍ୟ କର୍ପୂରଦ୍ୱୀପରେ ଅଧିକାର-କାମନା ଆଶ୍ଚର୍ଯ୍ୟ ବା ଅସମ୍ଭବ ନୁହେଁ ।'

ତାହା ଶୁଣି ମୁଁ କହିଲି—'କେବଳ କଥା ମାତ୍ରକେ ଯଦି କର୍ପୂରଦ୍ୱୀପରେ ଆପଣଙ୍କ ଆଧିପତ୍ୟ ସିଦ୍ଧ ହୋଇଯାଏ, ତାହାହେଲେ ଏହି ଜମ୍ବୁଦ୍ୱୀପ ଉପରେ ମଧ୍ୟ ଆମ୍ଭମାନଙ୍କ ରାଜା ହିରଣ୍ୟଗର୍ଭଙ୍କର ଅଧିକାର ଯୁକ୍ତିସଙ୍ଗତ ।' ଶୁକ କହିଲା—'ତେବେ ଏ ବିଷୟର ମୀମାଂସା ହେବ କପରି ?' ମୁଁ କହିଲି—'ଯୁଦ୍ଧଦ୍ୱାରା ହୋଇପାରେ ।'

ରାଜା ହାସ୍ୟ କରି କହିଲା—'ତେବେ ତୁମ୍ଭେ ଯାଇ ରାଜାକୁ ଯୁଦ୍ଧ ପାଇଁ ପ୍ରସ୍ତୁତ ହେବାକୁ କହ ।' ମୁଁ କହିଲି 'ଆପଣ ତାଙ୍କଠାକୁ ଦୂତ ପଠାନ୍ତୁ ।'

ଚକ୍ରବର୍ତ୍ତୀ କହିଲା—'କିଏ ଦୂତରୂପେ ଯିବ ? ଯେଉଁ ଲୋକ ଅତିଶୟ ଗୁଣବାନ୍, ପ୍ରଭୁଭକ୍ତ, କ୍ଷମାଶୀଳ, ନିର୍ମଳ-ହୃଦୟ, ପ୍ରତିଭାଶାଳୀ ସୁଧୀର, ସୁଦକ୍ଷ, ସୁବକ୍ତା ଓ ସାହସୀ, ଯେ କୌଣସି ବ୍ୟସନର ଅଧୀନ ନୁହେ, ଅନ୍ୟ ଲୋକମାନଙ୍କ ମନୋଗତଭାବ ଓ କୌଶଳ ବୁଝିବାରେ ଯାହାର ଅଦ୍ଭୁତ କ୍ଷମତା ଥାଏ ଏବଂ ପବିତ୍ର ବ୍ରାହ୍ମଣ ବଂଶରେ ଯାହାର ଜନ୍ମ, ସେହି ଲୋକ ହିଁ ଦୂତ କାର୍ଯ୍ୟର ଉପଯୁକ୍ତ ପାତ୍ର ।'

ଗୃଧ୍ର କହିଲା—'ଏହି ସମସ୍ତ ଗୁଣସମ୍ପନ୍ନ ଅନେକେ ଅଛନ୍ତି; ତଥାପି ବ୍ରାହ୍ମଣକୁ ହିଁ ଦୂତରୂପେ ପଠାଇବା ଉଚିତ; କାରଣ ପ୍ରକୃତ

---

ଫଳ ତାର ଫଳେ ଯାଇ ସାଧୁର ଉପରେ ।

ବ୍ରାହ୍ମଣ ସନ୍ତାନ ସର୍ବଦା ରାଜାକୁ ସନ୍ତୁଷ୍ଟ କରିବାକୁ ଚେଷ୍ଟିତ ହୁଏ । ସେ ସ୍ୱଭାବତଃ ଲୋଭଶୂନ୍ୟ । ଅତଏବ ସେ ରାଜାର ସମସ୍ତ କାର୍ଯ୍ୟରେ ଲିପ୍ତ ହେଲେହେଁ କଦାପି ରାଜ୍ୟର ସମ୍ପତ୍ତି ହରଣ କରେ ନାହିଁ । ଅଥଚ ନିଜେ ଦରିଦ୍ର ଚିରକାଳ ସେହି ଦରିଦ୍ର ହିଁ ରହେ । ଏହାର ଦୃଷ୍ଟାନ୍ତ କାଳକୂଟ ବିଷ :—

'କାଳକୂଟ ବିଷ-କଣ୍ଠ ସଦା ଶୋଭା କରେ,
ଶିବଙ୍କ ଶୁଭ୍ରତା କିନ୍ତୁ କଦାପି ନ ହରେ ।'

ଚିତ୍ରବର୍ଣ୍ଣ କହିଲେ—'ମନୁଷ୍ୟଜାତି ମଧ୍ୟରେ ବ୍ରାହ୍ମଣ ଯେପରି, ପକ୍ଷୀଜାତି ମଧ୍ୟରେ ଶୁକ ସେପରି । ଏଣୁ କରି ଶୁକ ଦୂତ ହୋଇ ଯାଆନ୍ତୁ । ଶୁକ ! ତୁମେ ଏହି ବକ ସଙ୍ଗରେ ଯାଇ ହିରଣ୍ୟଗର୍ଭଙ୍କୁ ମୋ ଅଭିପ୍ରାୟ ଜଣାଇବ ।' ଶୁକ କହିଲେ—'ମହାରାଜ ! ମୁଁ ଆପଣଙ୍କ ଆଦେଶ ପାଳନ କରିବାକୁ ପ୍ରସ୍ତୁତ ଅଛି, କିନ୍ତୁ ଦୁର୍ଜ୍ଜନ ସହିତ କୌଣସି ସ୍ଥାନକୁ ଯିବି ନାହିଁ—ଏହି ବକ ଅତି ଦୁଷ୍ଟ । କଥିତ ଅଛି—ଦୁର୍ଜ୍ଜନ ଆପଣା ଦୋଷରେ ମନ୍ଦ କର୍ମ କରେ, କିନ୍ତୁ ସମୟ ସମୟରେ ତାର ଫଳ ସାଧୁ ଲୋକ ଉପରେ ଯାଇ ଫଳିଥାଏ । ଦେଖନ୍ତୁ, ରାବଣ ସୀତା-ହରଣ କରିବାରୁ ସମୁଦ୍ର ବିନା ଦୋଷରେ ବନ୍ଧନଯୁକ୍ତ ହୋଇଥିଲା । ଦୁଷ୍ଟ ଲୋକ ସହିତ ବାସ କରିବା ବା କୌଣସି ସ୍ଥାନକୁ ଯିବା ଆପତ୍ତିଜନକ । ଥରେ ଗୋଟିଏ ହଂସ ଏକ କାକ ସହିତ ବାସ କରି ନିଜ ଜୀବନ ହରାଇଥିଲା ।'

ଚିତ୍ରବର୍ଣ୍ଣ ପଚାରିଲେ—'କପରି ?'

ଶୁକ କହିଲେ :—

---

## ହଂସ ଓ କାକ

ଉଜ୍ଜୟିନୀ ମାର୍ଗର ଏକ ପ୍ରାନ୍ତରେ ଗୋଟିଏ ପ୍ରକାଣ୍ଡ ଅଶ୍ୱତ୍ଥ ବୃକ୍ଷ ଅଛି । ସେହି ବୃକ୍ଷରେ ଏକ ରାଜହଂସ ଓ ଏକ କାକ ବାସ କରୁଥିଲେ । ଥରେ ଜଣେ ପଥିକ ପ୍ରଖର ଗ୍ରୀଷ୍ମରେ ଅତ୍ୟନ୍ତ ଶ୍ରାନ୍ତ ହୋଇ ସେହି ବୃକ୍ଷମୂଳରେ ଧନୁର୍ବାଣ ରଖି ଛାୟାରେ ନିଦ୍ରା ଗଲା । ତାହାର ମୁଖ ଉପରେ ବୃକ୍ଷର ଯେଉଁ ଛାୟା ପଡ଼ିଥିଲା, ତାହା କିଛିକ୍ଷଣ ପରେ ଘୁଞ୍ଚିଗଲା । ଅତଏବ ତାହା ଉପରେ ଆସି ଖରା ପଡ଼ିଲା । ପଥିକର ସେହି ଅବସ୍ଥା ଦେଖି ସେହି ବୃକ୍ଷରେ ଥିବା ପୁଣ୍ୟାତ୍ମା ନିଷ୍ପାପ ରାଜହଂସର ମନରେ ଦୟାର ଉଦୟ ହେଲା । ସେ ଆପଣାର ଦୁଇ ପକ୍ଷ ବିସ୍ତାର କରି ନିଦ୍ରିତ ପଥିକର ମୁଖରେ ପୁନର୍ବାର ଛାୟା ପକାଇଲା । ପଥଭ୍ରମଣରେ ପଥିକ ନିତାନ୍ତ କ୍ଳାନ୍ତ ହୋଇ ଯାଇଥିଲା—ଛାୟା ଯୋଗୁଁ ବର୍ତ୍ତମାନ ସେ ସୁଖରେ ଗାଢ଼ ନିଦ୍ରା ଗଲା । ନିଦ୍ରିତ ପଥିକ ମୁଖ ବ୍ୟାଦାନ କରିବା ମାତ୍ରେ ପର-ସୁଖ-ଦ୍ୱେଷୀ ସେହି କାକ ତାହାର ମୁଖରେ ମଳ ତ୍ୟାଗ କରି ବୃକ୍ଷରୁ ଉଡ଼ି ପଳାଇଲା । ପଥିକର ହଠାତ୍ ନିଦ୍ରାଭଙ୍ଗ ହେଲା । ବୃକ୍ଷ ଉପରେ ରାଜହଂସକୁ ଦେଖି—ସେ ମଳତ୍ୟାଗ କରିଅଛି ସ୍ଥିର କରି—ବାଣଦ୍ୱାରା ତାହାର ପ୍ରାଣ ସଂହାର କଲା ।

ଏହି କାରଣରୁ ମୁଁ କହୁଅଛି ଯେ ଦୁର୍ଜ୍ଜନ ସହିତ ସହବାସ କଲେ ବିପଦ ଘଟେ । ବୁଦ୍ଧିମାନ୍ ଲୋକ ସର୍ବଦା ସାଧୁସଙ୍ଗ କରିଥାଏ ଏବଂ ସଂସାରର ଅନିତ୍ୟତା ଉପଲବ୍ଧି କରି ଅହୋରାତ୍ର ପୁଣ୍ୟ କର୍ମ ଆଚରଣ କରେ ।

ମହାରାଜ ! ଆଉ ଏକ କଥା କହୁଅଛି, ଶୁଣନ୍ତୁ—

---

ତା' ସଙ୍ଗରେ କେଉଁଠାକୁ ନ କର ଗମନ ।

## କାକ ଓ ବର୍ତ୍ତିକ ପକ୍ଷୀ

କୌଣସି ଏକ ବୃକ୍ଷର ଶାଖାରେ ଗୋଟିଏ କାକ ବାସ କରୁଥାଏ । ସେହି ବୃକ୍ଷର ମୂଳରେ ଏକ ବର୍ତ୍ତିକ ପକ୍ଷୀ ଥାଏ । ଦିନେ ପକ୍ଷୀମାନେ ଗରୁଡ଼ଙ୍କ ଯାତ୍ରା-ମହୋତ୍ସବ ଉପଲକ୍ଷରେ ସମୁଦ୍ରତଟରକୁ ଗଲେ । ବର୍ତ୍ତିକ ମଧ୍ୟ ସେହି କାକ ସହିତ ସେଠାକୁ ଗଲା । ଜଣେ ଗଉଡ଼ ସେତେବେଳେ ମୁଣ୍ଡରେ ଦହି ହାଣ୍ଡିଟିଏ ଧରି ସେହି ମାର୍ଗରେ ଯାଉଥିଲା । କାକ ସେହି ହାଣ୍ଡି ଉପରେ ବସି ଚଞ୍ଚୁରୁ ବାରମ୍ବାର ଦହି ଖାଇବାକୁ ଲଗିଲା । ବର୍ତ୍ତିକ ତ କାକ ସଙ୍ଗରେ ଯାଉଛି—ସେ ମଧ୍ୟ ହାଣ୍ଡି ଉପରେ ବସିଲା । ଗଉଡ଼ ହାଣ୍ଡିଟି ମୁଣ୍ଡରୁ ତଳକୁ ଓହ୍ଲାଇ ଦେଖିଲା ଯେ, କାକ ଓ ବର୍ତ୍ତିକ ଦୁହେଁ ହାଣ୍ଡି ଉପରୁ ଉଡ଼ି ବାହାରି ଯାଉଛନ୍ତି । କାକ ଅତିଶୀଘ୍ର ସେଠାରୁ ଉଡ଼ି ବାହାରି ଗଲା । କିନ୍ତୁ ବର୍ତ୍ତିକ ପକ୍ଷୀ ସ୍ୱଭାବତଃ ଅତି ନିର୍ବୋଧ ଏବଂ ଧୀରେ ଧୀରେ ଉଡ଼େ । ଗଉଡ଼ ଅତି ସହଜରେ ବର୍ତ୍ତିକଟିକୁ ବଧ କଲା ।

ଏଥିଯୋଗୁଁ ସୁଜନମାନେ କହନ୍ତି ଯେ 'ଦୁର୍ଜନ ସହିତ କୌଣସି ସ୍ଥାନକୁ ଯିବା ଅନୁଚିତ ।'

ପରେ ମୁଁ କହିଲି 'ଭାଇ ଶୁକ ! ତୁମେ ମୋ ସମ୍ବନ୍ଧରେ ଏପରି ଆଶଙ୍କା କରୁଛ କି ହେତୁ ? ମୋ ନିକଟରେ ମହାରାଜ ଯେପରି, ତୁମ୍ଭେ ମଧ୍ୟ ସେହିପରି !'

ଶୁକ କହିଲା—'ହଁ ତାହା ସତ୍ୟ; କିନ୍ତୁ ଅକାଳ-କୁସୁମ ଯେପରି ଆପାତତଃ ଦେଖିବାକୁ ମନୋହର ହେଲେହେଁ ତଦ୍ୱାରା

---

ଚନ୍ଦ୍ର ସୁଧା ସତ୍ତ୍ୱ କୁଣ୍ଡେ ନ ରହଇ ଯଥା;

ଘୋର ଅମଙ୍ଗଳ ଘଟିଥାଏ, ଦୁର୍ଜନର ସହାସ୍ୟ ମିଷ୍ଟ ବଚନ ମଧ୍ୟ ସେପରି ଆପାତତଃ ପ୍ରୀତିକର ହେଲେ ସୁଦ୍ଧା ପରିଣାମରେ ତଦ୍ୱାରା ବିଶେଷ ଅନିଷ୍ଟ ହୋଇଥାଏ । ତୁମ୍ଭେ ଯେ ଦୁର୍ଜନ, ତାହା ତୁମ୍ଭ କଥାଦ୍ୱାରହିଁ ପ୍ରମାଣିତ ହୋଇଅଛି । କାରଣ, ତୁମ୍ଭ କଥା ଯୋଗୁଁ ଏହି ଦୁଇ ରାଜା ମଧ୍ୟରେ ଅକାରଣ ବିରୋଧ ଆରମ୍ଭ ହେଉଅଛି ।'

ପରେ ଚିତ୍ରବର୍ଣ୍ଣ ଯଥାରୀତି ମୋର ସତ୍କାର କରି ମୋତେ ବିଦାୟ ଦେଲେ । ଶୁକ ମଧ୍ୟ ମୋ ସଙ୍ଗରେ ଏଠାକୁ ଆସିଅଛି, ଆପଣ ସମସ୍ତ ବିଷୟ ଶୁଣିଲେ—ବର୍ତ୍ତମାନ ଯାହା କରିବା ଉଚିତ ତାହା ସ୍ଥିର କରନ୍ତୁ ।

ଚକ୍ରବାକ ହାସ୍ୟ କରି କହିଲା—'ମହାରାଜ, ବକ ବିଦେଶକୁ ଯାଇ ଉତ୍କୃଷ୍ଟ ରାଜକାର୍ଯ୍ୟ ସାଧନ କରିଅଛନ୍ତି । ମୂର୍ଖ ଲୋକମାନଙ୍କ ସ୍ୱଭାବ ଏପରି । ବିଜ୍ଞବ୍ୟକ୍ତିମାନେ ଅଶେଷ ସ୍ୱାର୍ଥତ୍ୟାଗ ସ୍ୱୀକାରପୂର୍ବକ ବିବାଦ ପରିହାର କରିଥାନ୍ତି; କିନ୍ତୁ ମୂର୍ଖ ଲୋକେ ଅକାରଣ ଅପର ସହିତ କଳହରେ ପ୍ରବୃତ୍ତ ହୁଅନ୍ତି ।'

ରାଜା ହିରଣ୍ୟଗର୍ଭ କହିଲେ—'ଯାହା ହୋଇ ଯାଇଅଛି, ସେଥିସକାଶେ ତିରସ୍କାର କରିବାଦ୍ୱାରା ଫଳ କ'ଣ ? ବର୍ତ୍ତମାନ ଯାହା କର୍ତ୍ତବ୍ୟ, ତାହାହିଁ ସ୍ଥିର କର ।' ଚକ୍ରବାକ କହିଲା—'ମହାରାଜ ! ତାହା ଆପଣଙ୍କୁ ନିର୍ଜନ ସ୍ଥାନରେ କହିବି । କାରଣ, ଆକାର ବା ବର୍ଣ୍ଣ କମ୍ପ ନେତ୍ର ବା ମୁଖର ବିକାର ଦେଖି ଅଥବା ପ୍ରତିଧ୍ୱନି ଶୁଣି ବୁଦ୍ଧିମାନ୍ ଲୋକେ ମନୋଭାବ ସ୍ପଷ୍ଟ ବୁଝି ପାରନ୍ତି ।

---

ତେସନ ଦୁର୍ଜ୍ଜନ ମୁଖେ ନଆସେ ସୁକଥା ।

ଅତଏବ ନିର୍ଜ୍ଜନ ସ୍ଥାନରେ ଅତି ସାବଧାନତା ସହିତ ମନ୍ତ୍ରଣା କରିବା ବିଧେୟ ।'

ଅନନ୍ତର କେବଳ ରାଜା ଓ ମନ୍ତ୍ରୀ ଭିନ୍ନ ଅନ୍ୟ ସମସ୍ତେ ତତ୍‌କ୍ଷଣ ସକାଶେ ସେ ସ୍ଥାନ ତ୍ୟାଗ କଲେ । ଚକ୍ରବାକ ରାଜହଂସକୁ କହିଲା 'ମହାରାଜ ! ମୋର ବିଶ୍ୱାସ—ଆମ୍ଭମାନଙ୍କ ମଧ୍ୟରୁହିଁ କୌଣସି କର୍ମଚାରୀର ମନ୍ତ୍ରଣାରେ ବକ ଏହି ବିବାଦ ଘଟାଇଅଛି । କାରଣ, ରୋଗୀ ମିଳିଲେ ବୈଦ୍ୟର ଜୀବିକା ଚଳେ । ପ୍ରଭୁ ମନ୍ଦ କର୍ମରେ ଆସକ୍ତ କିମ୍ବା ବିପଦରେ ପତିତ ହେଲେ ସେବକମାନଙ୍କର ବିଶେଷ ଅର୍ଜ୍ଜନ ହୋଇଥାଏ । ମୂର୍ଖଲୋକ ଯୋଗୁଁହିଁ ପଣ୍ଡିତ ଧନାଗମର ସୁଯୋଗ ପ୍ରାପ୍ତ ହୁଏ । ପ୍ରଜାମାନେ ଅଭିଯୋଗୀ ହେଲେ ରାଜାର ପ୍ରଚୁର ଅର୍ଥଲାଭ ହୋଇଥାଏ । ଅତଏବ ବୋଧହୁଏ, ଆମ୍ଭମାନଙ୍କର କୌଣସି ଦୁଷ୍ଟ କର୍ମଚାରୀ ଆପଣଙ୍କ ସହିତ ମୟୂରରାଜର ଏହି ବିବାଦ ଘଟାଇ ସେହି ସୁଯୋଗରେ ନିଜ ଅର୍ଥଲାଭର ଉପାୟ କରୁଅଛି ।'

ରାଜହଂସ କହିଲା—'ଯାହା ହେଉ ଏହି ବିଷୟର କାରଣ ପରେ ନିରୂପିତ କରାଯିବ । ବର୍ତ୍ତମାନ କର୍ତ୍ତବ୍ୟ କଣ ?'

ଚକ୍ରବାକ—ମହାରାଜ, ପ୍ରଥମରେ ସେଠାକୁ ଚର ଯାଉ; ତାହାଦ୍ୱାରହିଁ ଶତ୍ରୁର କାର୍ଯ୍ୟକଳାପ ଓ ବଳାବଳ ଜାଣି ପାରିବା । ଚର ରାଜାର ଚକ୍ଷୁସ୍ୱରୂପ ! କାରଣ, ଚର ବ୍ୟତୀତ ରାଜା ନିଜ ଓ ପର ରାଜ୍ୟରେ ଘଟୁଥିବା ସକଳ ଗୂଢ଼ ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞ ରହେ । ସେହି ଗୁପ୍ତଚର ଆମ୍ଭମାନଙ୍କର ଅନ୍ୟ ଜଣେ ବିଶ୍ୱସ୍ତ ଲୋକଙ୍କୁ ସଙ୍ଗରେ ଧରି ଯାଉ । ସେ ନିଜେ ସେଠାରେ ଗୁପ୍ତ ଭାବରେ ରହି ଏବଂ ଶତ୍ରୁର ମନ୍ତ୍ରଣାଦି ବୃତ୍ତି ତାହା ସେହି ବିଶ୍ୱସ୍ତ ବ୍ୟକ୍ତିଦ୍ୱାରା

---

ଦୁର୍ଜ୍ଜନର ସହବାସ କର ହେ ବର୍ଜ୍ଜନ;
ସାଧୁସଙ୍ଗେ ସଦା କାଳ କର ହେ ହରଣ ।

ଆମ୍ଭମାନଙ୍କୁ ଜଣାଇ । ଯେଉଁ ଲୋକ ଜଳ ଓ ସ୍ଥଳରେ ଚଳିପାରେ, ତାହାକୁ ଗୁପ୍ତଚର କରିବା ଉଚିତ । ଅତଏବ ଏହି ବକଜୁର୍ଣ୍ଣି ଏହି କାର୍ଯ୍ୟରେ ନିଯୁକ୍ତ କରନ୍ତୁ । ଏପରି ବିଶ୍ବାସ ପାତ୍ର ଅନ୍ୟ ଏକ ବକକୁ ଏହା ସଙ୍ଗରେ ପଠାନ୍ତୁ ଏବଂ ସେହି ବକର ସ୍ତ୍ରୀ ଓ ପୁତ୍ରଙ୍କୁ ରାଜଭବନରେ ଆଣି ରୁଦ୍ଧ କରି ରଖନ୍ତୁ, ଯେପରି ସେ ଉପ୍ସରେ ବିଶ୍ବାସ ଘାତକତା କରି ନପାରେ । କିନ୍ତୁ ଦେବ ! ଏହି କାର୍ଯ୍ୟ ଅତି ଗୁପ୍ତଭାବରେ କରିବାକୁ ହେବ । କାରଣ, ନିର୍ଜ୍ଜନ ସ୍ଥାନରେ ମନ୍ତ୍ରୀ ସହିତ ସତର୍କ ହୋଇ ମନ୍ତ୍ରଣା କରିବା ରାଜାର କର୍ତ୍ତବ୍ୟ । ମନ୍ତ୍ରଣା ତୃତୀୟ ଲୋକର କାନରେ ପଡ଼ିଲେ କମ୍ବା କେହି ତାହାର ସମ୍ବାଦ ପାଇଲେ ତାହା ସର୍ବତ୍ର ପ୍ରକାଶିତ ହୋଇ ନିଷ୍ଫଳ ହୋଇଯାଏ । ନୀତି ଶାସ୍ତ୍ରରେ ଲେଖା ଅଛି—'ରାଜାର ମନ୍ତ୍ରଣା ପ୍ରକାଶିତ ହେଲେ ତଦ୍ଦ୍ୱାରା ସକଳ ଦୋଷ ସଂଘଟିତ ହୁଏ, ଯାହାର କି ଆଉ ପ୍ରତିକାର ନାହିଁ ।'

ରାଜା ଚିତ୍ରବର୍ଣ୍ଣ କହିଲେ—'ଏଠାରେ ଜଣେ ଉତ୍କୃଷ୍ଟ ଗୁପ୍ତଚର ଅଛି ।' ମନ୍ତ୍ରୀ କହିଲେ—'ତେବେ ଯୁଦ୍ଧରେ ଜୟଲାଭ ସୁନିଶ୍ଚିତ ।'

ଏହି ସମୟରେ ପ୍ରତିହାରୀ ଆସି ରାଜାଙ୍କୁ ପ୍ରଣାମ କରି କହିଲା—'ମହାରାଜ ! ଜମ୍ବୁଦ୍ୱୀପରୁ ଏକ ଶୁକ ଆସି ଦ୍ୱାରଦେଶରେ ଅପେକ୍ଷା କରୁଅଛି ।'

ଚକ୍ରବାକ କହିଲା—'ଏବେ ତାହାକୁ କୌଣସି ଏକ ଉପଯୁକ୍ତ ବାସସ୍ଥାନକୁ ନେଇ ଯାଅ । ପରେ ତାହାକୁ ସଭାକୁ ଡକାଇ ରାଜାଙ୍କର ସାକ୍ଷାତ୍ କରାଇବା ।' ଚକ୍ରବାକର ଆଦେଶ ଶୀଘ୍ର ପାଳିତ ହେଲା ।

---

ସଂସାରର ଅନିତ୍ୟତା କରିଣ ସ୍ମରଣ;

ରାଜହଂସ କହିଲା—'ଯୁଦ୍ଧ ହେବେ ନିଶ୍ଚୟ ଘଟିଲା !'

ଚକ୍ରବାକ କହିଲା—ତଥାପି, ମହାରାଜ ! ସହସା ଯୁଦ୍ଧ କରିବା ଅନୁଚିତ । କାରଣ, ଯେଉଁ ଲୋକ ପୂର୍ବାପର ଉତ୍ତମରୂପେ ବିଚାର ନ କରି ଯୁଦ୍ଧ କରିବା ସକାଶେ କିମ୍ବା ସ୍ୱଦେଶ ତ୍ୟାଗ କରିବା ନିମନ୍ତେ ରାଜାଙ୍କୁ ଉପଦେଶ ଦିଏ, ସେ କଦାପି ମନ୍ତ୍ରୀପଦର ଯୋଗ୍ୟ ନୁହେଁ । ପୁଣି ଯୁଦ୍ଧରେ କେଉଁ ପକ୍ଷର ପରାଜୟ ଓ କେଉଁ ପକ୍ଷର ଜୟ ହେବ, ତାହା ଅନିଶ୍ଚିତ । ଅତଏବ ଯୁଦ୍ଧ କରିବା କଦାପି ଶ୍ରେୟସ୍କର ନୁହେଁ । ଅନ୍ୟ ଉପାୟରେ ଶତ୍ରୁଜୟର ଚେଷ୍ଟା କରିବା ଉଚିତ । ରାଜା ସାମ, ଦାନ ଓ ଭେଦ—ଏହି ତିନି ଉପାୟ ଗୋଟିଏ ଗୋଟିଏ କରି ଯଥା କାଳରେ ପ୍ରୟୋଗ କରିବା ଅଥବା ଆବଶ୍ୟକ ହେଲେ ତିନୋଟିଯାକ ଏକ ସମୟରେ ପ୍ରୟୋଗ କରି ଶତ୍ରୁ ଦମନରେ ଯତ୍ନବାନ୍ ହେବ; କିନ୍ତୁ କଦାପି ଯୁଦ୍ଧରେ ଯୋଗ ଦେବ ନାହିଁ । କାରଣ, ଯୁଦ୍ଧରେ ପ୍ରବୃତ୍ତ ହେବା ପର୍ଯ୍ୟନ୍ତ ସମସ୍ତେ ଶୂର ଓ ବୀର । ଯେ ଥରେ ହେଲେ ଯୁଦ୍ଧକ୍ଷେତ୍ରରେ ଶତ୍ରୁପକ୍ଷର ବଳ ଓ ସାହସ ପରୀକ୍ଷା କରି ନାହିଁ, ତାହାର ଗର୍ବପ୍ରକାଶ ସ୍ୱାଭାବିକ । ବହୁ ଲୋକ ମିଶି ମଧ୍ୟ ଯେଉଁ ପଥର ଉଠାଇ ପାରନ୍ତି ନାହିଁ, ତାହା ଖଣ୍ଡିଏ କାଠଦ୍ୱାରା ଅତି ସହଜରେ ଉଠାଯାଇ ପାରେ । ସାମାନ୍ୟ କୌଶଳ ପ୍ରୟୋଗରେ ଯେଉଁ ସବୁ ବଡ଼ ବଡ଼ କାର୍ଯ୍ୟ ସାଧିତ ହୋଇଥାଏ, ତାହାକୁ ମନ୍ତ୍ରଣାର ନିପୁଣତା ବୁଝାଯାଏ । କିନ୍ତୁ ଯୁଦ୍ଧ ଉପସ୍ଥିତ ହେବ ଏହି ମୁହୂର୍ତ୍ତଠାରୁ ହିଁ ଉଦ୍‌ଯୋଗ କରନ୍ତୁ । କାରଣ, କୃଷି କାର୍ଯ୍ୟରେ ହାତ ଦେଲେ କେବଳ ଦିନକରେ ଫଳ ମିଳେ ନାହିଁ; କିନ୍ତୁ ଉପଯୁକ୍ତ ପରିଶ୍ରମ କଲେ ଯଥା-ସମୟରେ ଫଳଲାଭ ହୋଇଥାଏ । ରାଜନୀତିକୌଶଳ ମଧ୍ୟ ସେହିପରି ।

---

ଅହୋରାତ୍ର ପୁଣ୍ୟ କର୍ମ କର ଆଚରଣ ।

ତାହା ଏକକ୍ଷଣ ମଧ୍ୟରେ ଫଳବତୀ ହୋଇ ନପାରେ; କିନ୍ତୁ ଦୀର୍ଘ ସମୟରେ ହୋଇଥାଏ । ପୁଣି ବଡ଼ଲୋକେ ସୁଦୂରରେ ବିପଦାଶଙ୍କା ଦେଖି ଅତିଶୟ ଭୀତ ହୁଅନ୍ତି; କିନ୍ତୁ ବିପଦ ସମ୍ମୁଖରେ ଆସି ଉପସ୍ଥିତ ହେଲେ ଧୈର୍ଯ୍ୟ ଦେଖାଇଥାନ୍ତି । ମାନସିକ ଉତ୍ତାପରେ ସକଳ କାର୍ଯ୍ୟ ନଷ୍ଟ ହୁଏ । ଯେପରି ଭୂମି ଅତ୍ୟନ୍ତ ଗରମ ହୋଇଗଲେ ତାହା ଅତି ଶୀତଳ ଜଳରେ ସୁଦ୍ଧା ଫାଟିଯାଏ, ସେପରି ମନ ଅତିଶୟ ଉତ୍ତେଜିତ ହୋଇଗଲେ ତାହା ଅତି ସାମାନ୍ୟ କାରଣରେ ସୁଦ୍ଧା ଛିନ୍ନଭିନ୍ନ ହୋଇଯାଏ । ଅତଏବ ଅତି ଧୀରସ୍ଥିର ଭାବରେ ବିବେଚନା ପୂର୍ବକ ସକଳ କାର୍ଯ୍ୟ କରିବା ବିଧେୟ ।

ବିଶେଷତଃ ମହାରାଜ ! ରାଜା ଶତ୍ରୁବର୍ଗ ଅତିଶୟ ଶକ୍ତିଶାଳୀ । ବଳବାନ୍ ସହିତ ଦୁର୍ବଳର ଯୁଦ୍ଧ ଶାସ୍ତ୍ର-ବିରୁଦ୍ଧ । ମନୁଷ୍ୟ ହସ୍ତୀ ସଙ୍ଗରେ ଯୁଦ୍ଧ କରି ମୃତ୍ୟୁ ପ୍ରାପ୍ତ ହୋଇଥାଏ । ପିପୀଲିକାର ପକ୍ଷୋଦ୍‌ଗମ ତାହାର ଯେପରି ମୃତ୍ୟୁଲକ୍ଷଣ, ପ୍ରବଳ ସହିତ ଯୁଦ୍ଧ ସେପରି ଦୁର୍ବଳର ମରଣସୂଚନା । ଯେ ଅକାଳରେ ଶତ୍ରୁକୁ ଆକ୍ରମଣ କରେ, ଲୋକେ ତାକୁ ନିତାନ୍ତ ନିର୍ବୋଧ ବୋଲି କହିଥାନ୍ତି । କଚ୍ଛପ ଯେପରି ଆପଣାର ମସ୍ତକ ଓ ପଦ ସଙ୍କୁଚିତ କରି ଶରୀର ମଧ୍ୟରେ ଲୁଚାଇ ରଖେ, ମାତଙ୍କ ରାଜା ସେପରି ଉପଯୁକ୍ତ ସମୟ ପାଇବାଯାଏ ଶତ୍ରୁପକ୍ଷରୁ ଅଶେଷ ଅତ୍ୟାଚାର ସହ୍ୟ କରି ସୁଦ୍ଧା ଶତ୍ରୁପ୍ରତି କ୍ରୋଧ ମନମଧ୍ୟରେ ହିଁ ଘୋଡାଇ ରଖିବ । ପରେ ସୁଯୋଗ ମିଳିଲେ କାଳସର୍ପ ତୁଲ୍ୟ ଭୀଷଣ କୋପପ୍ରକାଶ ପୂର୍ବକ ବୈରନିର୍ଯ୍ୟାତନ କରିବ । ନଦୀର ବେଗ ପ୍ରଖର ହେଲେ ତାହା ଯେପରି ତୃଣ ଓ ତରୁ ସମଭାବରେ ବିନଷ୍ଟ

---

ଶତ ଶତ ସ୍ୱାର୍ଥତ୍ୟାଗ କରି-ସ୍ୱୀକାର;

କରେ, ଶକ୍ତିଶାଳୀ ଲୋକ ସେପରି ମାତ୍ର ପ୍ରଭାବରେ ଦୁର୍ବଳ ଓ ସବଳ ଶତ୍ରୁମାନଙ୍କର ସର୍ବନାଶ ଘଟାଏ ।

ଅତଏବ ମହାରାଜ ! ଆମ୍ଭ ଦୁର୍ଗ ଯୁଦ୍ଧ ନିମନ୍ତେ ସଜ୍ଜିତ ହେବା ପର୍ଯ୍ୟନ୍ତ ଶତ୍ରୁର ଦୂତ ଏହି ଶୁକକୁ ମିଷ୍ଟ କଥାରେ ଭୁଲାଇ ଏଠାରେ ରଖନ୍ତୁ । ଦୁର୍ଗ ରାଜାର ପ୍ରଧାନ ଆଶ୍ରୟ । ଦୁର୍ଗ ମଧ୍ୟରେ ରହି ଜଣେ ମାତ୍ର ଯୋଦ୍ଧା ଏକଶତ ଶତ୍ରୁକୁ ସହଜରେ ପରାସ୍ତ କରିପାରେ । ସୁତରାଂ ଦୁର୍ଗ-ରକ୍ଷାର ବ୍ୟବସ୍ଥା ସର୍ବାଦୌ କରଣୀୟ । ଯେଉଁ ରାଜାର ଦୁର୍ଗ ସୁଦୃଢ଼ ଓ ସୁସଜ୍ଜିତ ନୁହେ, ସେ ଯେ ଅନାୟାସରେ ଶତ୍ରୁଦ୍ୱାରା ପରାଜିତ ହେବ, ଏଥିରେ ଆଉ ସନ୍ଦେହ ନାହିଁ । ସମୁଦ୍ର ମଧ୍ୟରେ ନୌକା ବୁଡ଼ିଗଲେ ମନୁଷ୍ୟ ଜୀବନ ହରାଏ; ଦୁର୍ଗ-ଭ୍ରଷ୍ଟ ହେଲେ ରାଜା ସେପରି ନିଃସହାୟ ଅବସ୍ଥାରେ ପଡ଼ି ବିନଷ୍ଟ ହୋଇଥାଏ । ଯେଉଁ ଦୁର୍ଗ ଚତୁର୍ଦ୍ଦିଗରେ ଦୁର୍ଲଂଘ୍ୟ ପ୍ରାଚୀର, ଦୁସ୍ତର ପରିଖା, ନଦୀ, ପର୍ବତ, ବନ ବା ମରୁଭୂମିଦ୍ୱାରା ବେଷ୍ଟିତ ହୋଇଥାଏ, ତାହା ଅତ୍ୟନ୍ତ ସୁଦୃଢ଼ ଓ ନିରାପଦ ଏବଂ ଶତ୍ରୁ ତାହା ସହଜରେ ଆକ୍ରମଣ କରି ନ ପାରେ । ସର୍ବଦା ଦୁର୍ଗ ମଧ୍ୟରେ ଯୁଦ୍ଧ-ଯନ୍ତ୍ର ଓ ଜଳାଶୟ ସଜ୍ଜିତ କରି ରଖିବା ବାଞ୍ଛନୀୟ । ଦୁର୍ଗର ଆୟତନ ସୁବିସ୍ତୃତ ଏବଂ ଗଠନ ଅଭେଦ୍ୟ ରହିବା ଆବଶ୍ୟକ । ତହିଁ ମଧ୍ୟରେ ପ୍ରଚୁର ମୂଲ୍ୟ ରସ, ଧାନ୍ୟ, କାଷ୍ଠ ପ୍ରଭୃତି ପଦାର୍ଥ ସଞ୍ଚିତ ରଖିବା ବିଧେୟ । ଦୁର୍ଗର ପ୍ରବେଶ ଓ ନିର୍ଗମନ ପଥ ସର୍ବଦା ସୁରକ୍ଷିତ କରାଯିବା ଉଚିତ ।'

ରାଜହଂସ—ଦୁର୍ଗର ଅନୁସନ୍ଧାନରେ କାହାକୁ ନିଯୁକ୍ତ କରିବା ?

ଚକ୍ରବାକ—ଯେଉଁ ଲୋକ ଯେଉଁ କାର୍ଯ୍ୟରେ ନିପୁଣ, ତାହାକୁ ସେହି କାର୍ଯ୍ୟରେହିଁ ନିଯୁକ୍ତ କରିବା ଉଚିତ । କାର୍ଯ୍ୟରେ ଅଭ୍ୟାସ

---

କରନ୍ତି ବିବାଦ ବିଜ୍ଞଜନେ ପରିହରି' ।

ନଥିଲେ ଲୋକେ ଶାସ୍ତ୍ରଜ୍ଞ ହୋଇ ସୁଦ୍ଧା ହତବୁଦ୍ଧି ହୋଇ ପଡ଼ନ୍ତି । ଅତଏବ ଏହି କାର୍ଯ୍ୟରେ ସାରସଙ୍କୁ ନିଯୁକ୍ତ କରନ୍ତୁ ।

ରାଜହଂସ ସେହିକ୍ଷଣି ସାରସଙ୍କୁ ଡକାଇ କହିଲେ—'ସାରସ, ତୁମ୍ଭେ ଶୀଘ୍ର ଯାଇ ଦୁର୍ଗର ତତ୍ତ୍ୱ ନିଅ ।' ସାରସ ପ୍ରଣାମ କରି କହିଲେ—'ମହାରାଜ ! ଏହି ସୁଦୀର୍ଘ ସରୋବର ତ ଆମ୍ଭମାନଙ୍କ ବହୁକାଳର ଜଣାଶୁଣା ଦୁର୍ଗ । କିନ୍ତୁ ଏହି ସରୋବର ମଧ୍ୟରେ ଥିବା ଦ୍ୱୀପରେ ସକଳ ପ୍ରକାର ଖାଦ୍ୟଦ୍ରବ୍ୟ ସଂଗ୍ରହ କରି ଆଣି ରଖିବାକୁ ହେବ । ପ୍ରଥମରେ ଧାନ୍ୟ ସଂଗ୍ରହ କରିବା ଉଚିତ; କାରଣ, ଜଗତରେ ତାହା ଅପେକ୍ଷା ଉତ୍କୃଷ୍ଟତର ଖାଦ୍ୟ ପଦାର୍ଥ ଆଉ ନାହିଁ । ମଣି ଇତ୍ୟାଦି ଦ୍ରବ୍ୟରେ କ୍ଷୁଧା ନିବାରଣ ହୁଏ ନାହିଁ, କିନ୍ତୁ ଧାନ୍ୟ ପ୍ରାଣ ରଖେ । ପୁଣି ଅତି ଯତ୍ନରେ ଲବଣ ମଧ୍ୟ ସଞ୍ଚିତ କରିବାକୁ ହେବ; କାରଣ, ସକଳ ରସ ମଧ୍ୟରେ ତାହା ଶ୍ରେଷ୍ଠ । ନାନା ପ୍ରକାର ମସଲା ପକାଇଲେହେଁ ଲବଣ ବିନା ବ୍ୟଞ୍ଜନ ଗୋମୟତୁଲ୍ୟ ବିସ୍ୱାଦ ଲାଗେ ।'

ରାଜହଂସ କହିଲେ—'ତେବେ ତୁମ୍ଭେ ଅତିଶୀଘ୍ର ଯାଇ ସମସ୍ତ ଆୟୋଜନ କର ।'

ଦ୍ୱାରପାଳ ପୁନର୍ବାର ଆସି ଜଣାଇଲା—'ପ୍ରଭୋ ! ମେଘବର୍ଣ୍ଣ ନାମକ ଏକ କାକ ସିଂହଳ-ଦ୍ୱୀପରୁ ସପରିବାର ଆସି ଦ୍ୱାରରେ ଅପେକ୍ଷା କରିଅଛି । ସେ ମହାରାଜାଙ୍କ ସହିତ ସାକ୍ଷାତ କରିବାକୁ ଇଚ୍ଛୁକ ।'

---

ଯେଉଁ କାର୍ଯ୍ୟେ ବିଚକ୍ଷଣ ଅଟେ ଯେଉଁ ଜନ;

ରାଜା କହିଲେ—'କାକ ଜାତି ଅତି ବଙ୍କ ଓ ବହୁଦର୍ଶୀ । ଅତଏବ ତାହା ସହିତ ବନ୍ଧୁତା କରିବା ଓ ତାହାର ସହାୟ ହେବା ଉଚିତ ।'

ଚକ୍ରବାକ କହିଲା—'ମହାରାଜ ! ତାହା ସତ୍ୟ; କିନ୍ତୁ ଆମ୍ଭେମାନେ ଜଳଚର, କାକ ସ୍ଥଳଚର । ଏହି କାରଣରୁ ସେ ସ୍ୱଭାବତଃ ଆମ୍ଭମାନଙ୍କର ଶତ୍ରୁ । ତେବେ କିପରି ତାହାର ବନ୍ଧୁ ଓ ସହାୟ ହେବେ ? କଥିତ ଅଛି—ଯେଉଁ ମୂର୍ଖ ନିଜ ପକ୍ଷ ଛାଡ଼ି ଶତ୍ରୁ ସଙ୍ଗରେ ମିଶିବାକୁ ଇଚ୍ଛା କରେ, ସେ ନୀଳବର୍ଣ୍ଣ ଶୃଗାଳ ପରି ପ୍ରାଣ ହରାଏ ।'

ରାଜହଂସ ପଚାରିଲେ 'କିପରି ?'

ଚକ୍ରବାକ କହିଲା—

---

## ନୀଳବର୍ଣ୍ଣ ଶୃଗାଳ

ଥରେ ଏକ ଶୃଗାଳ ନଗର ପ୍ରାନ୍ତରେ ବୁଲୁଁ ବୁଲୁଁ ଏକ ନୀଳ କୁଣ୍ଡରେ ପଡ଼ିଗଲା । ସେ ସେଥିରୁ ଉଠି ନପାରି ଗୋଟିଏ ଉପାୟ ସ୍ଥିର କଲା । ସେଦିନ ସକାଳବେଳେ ସେଥି ମଧ୍ୟରେ ମଲା ପରି ପଡ଼ି ରହିଲା । କୁଣ୍ଡ-ସ୍ୱାମୀ ତାହାକୁ ସେହି ଅବସ୍ଥାରେ ଦେଖି ସେ ଏକାବେଳକେ ମରିଯାଇଛି ଭାବି ତାହାକୁ ସେଥି ମଧ୍ୟରୁ ବାହାର କଲା ଏବଂ କୌଣସି ଏକ ଦୂର ସ୍ଥାନକୁ ନେଇ ତାହାକୁ ଫିଙ୍ଗି ଆସିଲା । ଶୃଗାଳର ଆନନ୍ଦ ଆଉ ତାର ସୀମା ମାନିଲା ନାହିଁ । ସେ ସେହିକ୍ଷଣି ବନ ମଧ୍ୟରେ ଯାଇ ପ୍ରବେଶ କଲା । ସେ ଆପଣାକୁ ନୀଳବର୍ଣ୍ଣ ଦେଖି ଭାବିଲା—'ମୋ ଦେହର ବର୍ଣ୍ଣ ବର୍ତ୍ତମାନ ଅପରୂପ ହୋଇଅଛି ।

---

କରିବ ତାହାକୁ ସେହି କାର୍ଯ୍ୟ ନିୟୋଜନ ।

ଅତଏବ ଏପରି ଚମତ୍କାର ବର୍ଣ୍ଣ ପାଇଁ କାହାରିକୁ ନଜର ଉନ୍ନତ ସାଧନ ନ କରିବ ।' ସେ ଏହା କହିଣ ଶୃଗାଳମାନଙ୍କୁ ଡାକି କହିଲା—'ଭାଇମାନେ, ବନଦେବୀ ଆସି ସ୍ୱହସ୍ତରେ ମୋ ମସ୍ତକରେ ସକଳ ଔଷଧରସ ସେଚନପୂର୍ବକ ଅରଣ୍ୟ ରାଜ୍ୟରେ ମୋତେ ଅଭିଷିକ୍ତ କରିଅଛନ୍ତି । ମୋର ଆଶ୍ଚର୍ଯ୍ୟ ବର୍ଣ୍ଣ ଦେଖ । ଆଜିଠାରୁ ମୋ ଆଦେଶ ପ୍ରକାରେ ସମସ୍ତ ବଣର-କାର୍ଯ୍ୟ ଚଳିବ ।'

ତାହାର ଅପୂର୍ବ ବର୍ଣ୍ଣ ଦେଖି ଶୃଗାଳମାନଙ୍କ ବିସ୍ମୟର ଆଉ ସୀମା ରହିଲା ନାହିଁ । ସେମାନେ ତାହାକୁ ସାଷ୍ଟାଙ୍ଗ ପ୍ରଣାମ କରି କହିଲେ—'ମହାରାଜାଙ୍କ ଆଜ୍ଞା ଆମ୍ଭମାନଙ୍କର ଶିରୋଧାର୍ଯ୍ୟ ।' କ୍ରମଶଃ ସକଳ ଅରଣ୍ୟବାସୀଙ୍କ ଉପରେ ନୀଳବର୍ଣ୍ଣ ଶୃଗାଳର ଆଧିପତ୍ୟ ଚଳିଲା । ସେ ନିଜ ଜ୍ଞାତିବର୍ଗଦ୍ୱାରା ବେଷ୍ଟିତ ହୋଇ ବନରେ ପ୍ରଭୁତ୍ୱ ଦେଖାଇବାକୁ ଲଗିଲା ।

କିଛିଦିନ ପରେ ସିଂହ, ବ୍ୟାଘ୍ର ପ୍ରଭୃତି ଉଚ୍ଚଶ୍ରେଣୀର ପଶୁମାନେ ତାହାର ପାରିଷଦ ହେବାରୁ, ସେ ଶୃଗାଳମାନଙ୍କର ସହବାସ ନୀଚ ଓ ଘୃଣ୍ୟ ମନେ କରି ସେମାନଙ୍କୁ ସଭାରୁ ତଡ଼ିଦେଲା । ଶୃଗାଳଗଣ ଅତିଶୟ ଦୁଃଖିତ ହେଲେ । ଜଣେ ଏକ ବୃଦ୍ଧ ଶୃଗାଳ ସେମାନଙ୍କୁ କହିଲା—'ଭାଇମାନେ, ଦୁଃଖିତ ହୁଅ ନାହିଁ । ଆମ୍ଭେମାନେ ତାହାର ଜ୍ଞାତି; ଅତଏବ ତାହାର ମର୍ମ କଥା ଜାଣୁ । ଆମ୍ଭେମାନେ ସମସ୍ତେ ଚତୁର ଓ ନୀତି-କୁଶଳ । ସେ ବିବେକହୀନ ଶୃଗାଳ ଆମ୍ଭମାନଙ୍କୁ ଅପମାନ ଦେଇ ନିଜ ବିନାଶ-ପଥ ପରିଷ୍କାର କରିଅଛି ମାତ୍ର । ଏହି ସ୍ଥାନର ବ୍ୟାଘ୍ରାଦି ପଶୁସକଳ କେବଳ ତାହାର ବର୍ଣ୍ଣରେ ପ୍ରତାରିତ ହୋଇ ତାହାକୁ ରାଜା ବୋଲି ମାନିଅଛନ୍ତି । ସେମାନେ

ଉଦ୍‌ଯୋଗୀ ବିଦ୍ୟାର ପାର କରେ ଦରଶନ;

ତାହାର ଜାତି ଓ ପ୍ରକୃତ ବୁଦ୍ଧିପାରନାହାନ୍ତି । ଅତଏବ ସେମାନେ ଯେପରି ତାହାର ପ୍ରକୃତ ପରିଚୟ ପାଇପାରିବେ, ଆମ୍ଭମାନଙ୍କୁ ସେହି ଚେଷ୍ଟା କରିବାକୁ ହେବ । ଏହି ବିଷୟରେ ମୁଁ ଯାହା କହୁଅଛି ତାହା କର । ମୋ ଉପଦେଶ ଅନୁସାରେ କାର୍ଯ୍ୟ କଲେ ସେ ସହଜରେ ବିନଷ୍ଟ ହେବ ଏବଂ ଆମ୍ଭେମାନେ ପରମ ସୁଖରେ ରହିବା । ସନ୍ଧ୍ୟାବେଳେ ନୀଳବର୍ଣ୍ଣ ଶୃଗାଳ ନିକଟକୁ ଯାଇ ତୁମ୍ଭେମାନେ ସମସ୍ତେ ମିଶି ରଡ଼ି ଛାଡ଼ । ତୁମ୍ଭମାନଙ୍କ ଡାକ ଶୁଣି ସେ ମଧ୍ୟ ଜାତୀୟ ସ୍ୱଭାବ ଅନୁସାରେ ଡାକ ଛାଡ଼ିବ । କାରଣ, ଯଦ୍ୟପି ନୀଚ ଲୋକ ଉଚ୍ଚପଦ ପାଏ, ତଥାପି ସେ ଆପଣାର ସ୍ୱଭାବ ଛାଡ଼ିପାରେ ନାହିଁ । କୁକୁର ରାଜସିଂହାସନ ପାଇଲେ ମଧ୍ୟ ଚର୍ମପାଦୁକା ଲେହନ ନ କରି ରହିପାରେ କି ? ତାହାର ଡାକ ଶୁଣି ବ୍ୟାଘ୍ରାଦି ହିଂସ୍ରଜନ୍ତୁସକଳ ତାହାକୁ ଚିହ୍ନିପାରି ତାହାର ପ୍ରାଣ ସଂହାର କରିବେ ।'

ପରେ ଶୃଗାଳମାନେ ସେହି ବୃଦ୍ଧ ଶୃଗାଳର ପରାମର୍ଶ ପ୍ରକାରେ କାର୍ଯ୍ୟ କରିବାରୁ ନୀଳବର୍ଣ୍ଣ ଶୃଗାଳ ଶେଷରେ ଜୀବନ ହରାଇଲା । ନିଜ ଘରର ଲୋକ ଘରର ସମସ୍ତ ଗୁପ୍ତକଥା ଜାଣେ । ଅତଏବ ସେ ଶତ୍ରୁ ହେଲେ ଅନାୟାସରେ ଯେ ସର୍ବନାଶ କରିପାରିବ, ଏଥିରେ ସନ୍ଦେହ ନାହିଁ । ବନାଗ୍ନିରେ ବନ ଦଗ୍ଧ ହୋଇଥାଏ । ଗୃହ ସନ୍ଧାନରୁହିଁ ରାବଣ ସବଂଶେ ନଷ୍ଟ ହୋଇଥିଲା । ଏହି କାରଣରୁ ମୁଁ କହୁଅଛି—

"ସ୍ୱପକ୍ଷ ଛାଡ଼ି ଯେ ମୂଢ଼ ଶତ୍ରୁପକ୍ଷ ଯାଏ,<br>
ମରେ ସେହି ନୀଳବର୍ଣ୍ଣ ଶୃଗାଳର ପ୍ରାୟେ ।"

---

ଧର୍ମ-ଅର୍ଥ-ଯଶ ଲଭେ ବିନୟୀ ଯେ ଜନ ।

ରାଜହଂସ କହିଲା—'ଯଦ୍ୟପି ଏହି କଥା ସତ୍ୟ, ତଥାପି ମେଘବର୍ଣ୍ଣ ସହିତ ଅନ୍ତତଃ ସାକ୍ଷାତ କରିବା ଉଚିତ; କାରଣ, ସେ ବହୁଦୂରରୁ ଆସିଅଛି । ତାହାକୁ ସ୍ୱପକ୍ଷରେ ନିଯୁକ୍ତ କରିବା କଥା ପରେ ବିଚାର କରି ଦେଖାଯିବ ।'

ଚକ୍ରବାକ କହିଲା—'ମହାରାଜ ! ଗୁପ୍ତଚର ପ୍ରେରିତ ଏବଂ ଦୁର୍ଗ ସଜ୍ଜିତ ହୋଇଅଛି । ଅତଏବ ଏବେ ଶୁକ ସହିତ ଦେଖାକରି ତାହାକୁ ବିଦାୟ ଦିଅନ୍ତୁ । କିନ୍ତୁ ସଙ୍ଗରେ ରକ୍ଷିଗଣ ଧରି ଯାଇ କିଛି ଦୂରରେ ରହି ଦୂତକୁ ଦେଖା ଦେବା ରଜାର କର୍ତ୍ତବ୍ୟ । କାରଣ, ଅନେକ ସମୟରେ ଦୂତମାନେ ମନରେ ବିଦ୍ୱେଷଭାବ ଧରି ଆସିଥାନ୍ତି । ଚାଣକ୍ୟ କପଟ ଦୂତ ପଠାଇ ନନ୍ଦ ରାଜାଙ୍କ ପ୍ରାଣ ହରଣ କରିଥିଲେ ।

ପରେ ରାଜହଂସ ସଭା କରି ଶୁକ ଓ ମେଘବର୍ଣ୍ଣଙ୍କୁ ସେଠାକୁ ଡକାଇଲା । ଶୁକ ନିଜ ମସ୍ତକ କିଞ୍ଚିତ୍ ଉନ୍ନତ କରି ନିର୍ଦ୍ଦିଷ୍ଟ ଆସନରେ ବସି କହିଲା—'ହେ ହିରଣ୍ୟଗର୍ଭ ! ପରମ ପୂଜନୀୟ ରାଜାଧିରାଜ ଚିତ୍ରବର୍ଣ୍ଣ ତୁମ୍ଭଙ୍କୁ ଏହି ଆଦେଶ ଦେଇଅଛନ୍ତି—ଯଦି ତୁମ୍ଭର ରାଜ୍ୟ ଓ ପ୍ରାଣ ରକ୍ଷା କରିବାର ବାସନା ଥାଏ, ତାହାହେଲେ ଶୀଘ୍ର ଆସି ମୋ ପଦତଳରେ ପ୍ରଣତ ହୁଅ । ନଚେତ୍ ତୁମ୍ଭ ରାଜ୍ୟ ଛାଡ଼ି ସ୍ଥାନାନ୍ତରକୁ ପଳାଇବାର ଚେଷ୍ଟା କର ।'

ରାଜହଂସ ଅତ୍ୟନ୍ତ କ୍ରୁଦ୍ଧ ହୋଇ କହିଲା 'ଆଁ, ଏହି ସଭାରେ ଏପରି କେହି ନାହିଁ, ଯେ ଏ ପାଷଣ୍ଡକୁ ଗଳାଧକ୍କା ଦେଇ ଦୂର କରିଦେବ ।' ତାହା ଶୁଣି ମେଘବର୍ଣ୍ଣ ଉଠି କହିଲା—'ମହାରାଜ !

---

ଥିଲେ ମଧ୍ୟ ସୁବିପୁଳ ବିଭବ ଅତୁଳ;

ଆଦେଶ ଦେଲେ ମୁଁ ଏହିକ୍ଷଣି ଏହି ଦୁଷ୍ଟ ଶୁକର ପ୍ରାଣ ସଂହାର କରିବି ।'

ଚକ୍ରବାକ ଦୃଢ଼ସ୍ୱରରେ କହିଲା—'ମହାଶୟ, ଏପରି କଥା କେବେ କହିବେ ନାହିଁ । ଯେଉଁ ସଭାରେ ବୃଦ୍ଧବ୍ୟକ୍ତି ନ ଥାଏ, ତାହା ସଭା ପଦବାଚ୍ୟ ନୁହେଁ । ବୃଦ୍ଧ ନୁହେଁ ସେ, ଯାହାର ଧର୍ମ-ଜ୍ଞାନ ନାହିଁ । ସତ୍ୟହୀନ ବିଷୟ ଧର୍ମ ନୁହେଁ । ଯହିଁରେ କପଟତା ରହେ, ତାହା କଦାପି ସତ୍ୟ ନୁହେ । ରାଜଧର୍ମ ଅନୁସାରେ ଦୂତ ରାଜାର ମୁଖତୁଲ୍ୟ । ସେ ନିଜ ପ୍ରଭୁର ଆଜ୍ଞାବହ ମାତ୍ର; ସୁତରାଂ ସ୍ୱୟଂ ନିରପରାଧ ଓ ଅବଧ୍ୟ । ସେ ମ୍ଲେଚ୍ଛ ହେଲେହେଁ କଦାପି ବଧ୍ୟ ନୁହେ । ପ୍ରାଣ-ଦଣ୍ଡ ପାଇ ସୁଦ୍ଧା ନିର୍ଭୟ ହୃଦୟରେ ସତ୍ୟ କଥା କହିବା ଏବଂ ପ୍ରଭୁର ଆଜ୍ଞା ପାଳନ କରିବା ଦୂତର ପ୍ରକୃତ ଧର୍ମ ।

'ଶତ୍ରୁର ସମ୍ମାନ ଆଉ ନିଜ ଅପମାନ,
ଦୂତର କଥାରେ କେବେ କେ ବା କରେ ଜ୍ଞାନ ?'

ଦୂତ ପ୍ରଭୁ ଆଜ୍ଞାରେ ଆସି ସହସ୍ର ଗାଳି ଦେଲେ ସୁଦ୍ଧା, ତାହା ପ୍ରତି କ୍ରୋଧ ପ୍ରକାଶ କରିବା ସମ୍ପୂର୍ଣ୍ଣ ରାଜନୀତିବିରୁଦ୍ଧ ।

ଚକ୍ରବାକର ଏହି ସମସ୍ତ ଉପଦେଶ ଶୁଣି ରାଜା ଓ କାକ ପ୍ରକୃତିସ୍ଥ ହେଲେ । ଶୁକ ସଭାରୁ ପ୍ରସ୍ଥାନ କରିବାକୁ ଉଦ୍ୟତ ହେବାରୁ ଚକ୍ରବାକ ତାହାକୁ ଯାଇ ସାନ୍ତ୍ୱନା ଦେଲା । ପରେ ରାଜହଂସ ଶୁକକୁ ସ୍ୱର୍ଣ୍ଣାଳଙ୍କାର ପ୍ରଭୃତି ରାଜପ୍ରସାଦ ପ୍ରଦାନ କରି ତାହାକୁ ବିଦାୟ କଲା । ଶୁକ ସ୍ୱଦେଶକୁ ପ୍ରସ୍ଥାନ କଲା ।

---

ଆପଣା ଦୁର୍ମତି ଦୋଷେ ହୁଏ ତା' ବିଫଳ ।

ଶୁକ ବିନ୍ଧ୍ୟାଚଳକୁ ଯାଇ ନିଜ ପ୍ରଭୁ ମୟୂରରାଜ ଚିତ୍ରବର୍ଣ୍ଣର ଚରଣରେ ପ୍ରଣାମ କଲା । ତାହାକୁ ପ୍ରତ୍ୟାଗତ ଦେଖି ଚିତ୍ରବର୍ଣ୍ଣ ପଚାରିଲେ—'ଶୁକ, ସମ୍ବାଦ କ'ଣ ? କପରି ସେ ଦେଶ ?' ଶୁକ ଉତ୍ତର କଲା—'ମହାରାଜ, ସଂକ୍ଷିପ୍ତ ସମ୍ବାଦ ଏହି ଯେ, ଆପଣଙ୍କୁ ରଣସଜ୍ଜା କରିବାକୁ ହେବ । କର୍ପୂରଦ୍ୱୀପ ଯଥାର୍ଥରେ ସ୍ୱର୍ଗତୁଲ୍ୟ; ତାହାର ଐଶ୍ୱର୍ଯ୍ୟ ବର୍ଣ୍ଣନ କରିବାକୁ ମୁଁ ଏକାନ୍ତ ଅକ୍ଷମ ।'

ଏହା ଶୁଣି ରାଜା ଚିତ୍ରବର୍ଣ୍ଣ ସମସ୍ତ ସୁବିଜ୍ଞ ମନ୍ତ୍ରୀମାନଙ୍କୁ ଡକାଇ ମନ୍ତ୍ରଣା ଆରମ୍ଭ କଲା । ସେମାନଙ୍କୁ କହିଲା—'ବର୍ତ୍ତମାନ ଆମ୍ଭମାନଙ୍କର କର୍ତ୍ତବ୍ୟ ସ୍ଥିର କର । ଯୁଦ୍ଧ ଅବଶ୍ୟ ତ କରିବାକୁ ହେବ । କଥିତ ଅଛି, ଅସନ୍ତୁଷ୍ଟ ବ୍ରାହ୍ମଣର ଦୁର୍ଗତି କଦାପି ଘୁଞ୍ଚେ ନାହିଁ ଏବଂ ସନ୍ତୁଷ୍ଟ ରାଜାର କେବେ ଉନ୍ନତି ହୁଏ ନାହିଁ । ଗଣିକା ଲଜ୍ଜାଶୀଳା ହେଲେ ଅର୍ଜ୍ଜନ କରି ନ ପାରେ ଏବଂ କୁଳ-ନାରୀ ଲଜ୍ଜା ତ୍ୟାଗ କଲେ ଅଧୋଗତି ପ୍ରାପ୍ତ ହୋଇଥାଏ ।

ଦୂରଦର୍ଶୀନାମା ସେହି ଗୃଧ୍ରମନ୍ତ୍ରୀ କହିଲା—'ମହାରାଜ, ସମସ୍ତ ଅବସ୍ଥା ନ ବୁଝି ଯୁଦ୍ଧରେ ଯୋଗ ଦେବା ଅବିଧେୟ; କାରଣ, ଯୁଦ୍ଧରେ ଅଶେଷ ବିପଦ ଘଟେ । ଯେତେବେଳେ ଆପଣାର ସୈନ୍ୟ, ପ୍ରଜା, ମିତ୍ର ଓ ପାତ୍ର ଅତିଶୟ ଅନୁରକ୍ତ ଥାନ୍ତି ଏବଂ ଶତ୍ରୁପକ୍ଷର ଠିକ୍ ତାହାର ବିପରୀତ ଅବସ୍ଥା ଥାଏ, ସେତେବେଳେ ଶତ୍ରୁ ସହିତ ଯୁଦ୍ଧ କରିବା ଶ୍ରେୟସ୍କର । ପୁଣି, ଯେତେବେଳେ ଏହି ଫଳଲାଭ

'ଭୂମି, ମିତ୍ର କମ୍ବା ଧନ ଏ ତିନ କାରଣେ,
ହୋଇବ ପ୍ରବୃତ୍ତ ରାଜା ଶତ୍ରୁ ସହ ରଣେ ।'

---

ହେଲେହେଁ ଗୁରୁଙ୍କ ପ୍ରତି କ୍ରୋଧର ଉଦୟ;

ସୁନିଶ୍ଚିତ, ସେତେବେଳେ ଯୁଦ୍ଧ କରିବା ଉଚିତ । ନଚେତ୍ ଅକାରଣରେ ଯୁଦ୍ଧରେ ପ୍ରବୃତ୍ତ ହେବା ଅବିଧେୟ; କାରଣ, ଯୁଦ୍ଧରେ ଅନର୍ଥକ ନରହତ୍ୟା ଓ ସ୍ୱପକ୍ଷର ସର୍ବନାଶ ଏକାନ୍ତ ସମ୍ଭବ ।'

ଚିତ୍ରବର୍ଣ୍ଣ କହିଲ—'ମନ୍ତ୍ରୀ, ତୁମ୍ଭେ ଯାଇ ସୈନ୍ୟ ପରୀକ୍ଷା କର; ତାହାହେଲେ ସେମାନଙ୍କର ବଳାବଳ ବୁଝି ପାରିବ । ଦୈବଜ୍ଞଙ୍କୁ ପଚାରି ଯୁଦ୍ଧ ଯାତ୍ରାର ଶୁଭଲଗ୍ନ ସ୍ଥିର କର ।'

ଗୃଧ୍ରମନ୍ତ୍ରୀ କହିଲ 'ମହାରାଜ, ତଥାପି ସହସା ଯୁଦ୍ଧ-ଯାତ୍ରା ଆପତ୍ତିଜନକ, କାରଣ, ଯେଉଁମାନେ ଆତ୍ମବଳ ଓ ପରବଳ ନ ଭାବି ମୂର୍ଖତାବଶତଃ ଯୁଦ୍ଧ ନିମନ୍ତେ ଅଗ୍ରସର ହୁଅନ୍ତି, ସେମାନେ ମୃତ୍ୟୁକୁ ବରଣ କରିଥାନ୍ତି ମାତ୍ର ।'

ରାଜା ଚିତ୍ରବର୍ଣ୍ଣ କହିଲ—'ଏହି ଯୁଦ୍ଧ ପ୍ରସ୍ତାବରେ କୌଣସି-ମତେ ବାଧା ଦିଅ ନାହିଁ । ବିଜିଗୀଷୁ ରାଜା ଯେପରି ଶତ୍ରୁ ରାଜ୍ୟ ଆକ୍ରମଣ କରେ, ମୋତେ ତାହାହିଁ ଉପଦେଶ ଦିଅ । ଯୁଦ୍ଧ-ଯାତ୍ରା ସକାଶେ ମୋତେ ଉତ୍ସାହିତ କର ।'

ଗୃଧ୍ର କହିଲ—'କିନ୍ତୁ ମହାରାଜ, ତଦନୁରୂପ କାର୍ଯ୍ୟ ନକଲେ ସେ ସମସ୍ତ ଉପାୟ ଫଳପ୍ରଦ ହୁଏ ନାହିଁ । କଥିତ ଅଛି—ଅନୁଷ୍ଠାନ ବ୍ୟତୀତ କେବଳ ମନ୍ତ୍ରଣାରେ କାର୍ଯ୍ୟ ସିଦ୍ଧ ହୁଏ ନାହିଁ । ଔଷଧ ସ୍ଥିର କରିଦେବା ମାତ୍ରେ ରୋଗ ଶାନ୍ତ ହେବାର କେବେ ଶୁଣି ଅଛନ୍ତି ? ମହାରାଜାଙ୍କ ଆଦେଶ ଅନୁଲଙ୍ଘନୀୟ, ଅତଏବ ମୁଁ ଏହି ସକଳ ଶାସ୍ତ୍ରୋକ୍ତ ଉପାୟ କହୁଅଛି, ଶୁଣନ୍ତୁ । ନଦୀ, ନଦୀ, ଦୁର୍ଗ, ଗିରି, ବନ ପ୍ରଭୃତି ଯେଉଁ ଯେଉଁ ସ୍ଥାନରେ ଭୟର କାରଣ ଅଛି, ସେନାପତି ସେହି ସେହି ସ୍ଥାନକୁ ବ୍ୟୂହ-ସଜ୍ଜିତ ସୈନ୍ୟ ସହିତ ଯିବ । ସର୍ବ

ଯତନେ ଦମନ ତାହା କରିବ ନିଶ୍ଚୟ ।

ପ୍ରଥମରେ ଶ୍ରେଷ୍ଠ ବୀରମାନଙ୍କ ସଙ୍ଗରେ ସନ୍ଧକାଙ୍କ୍ଷୀ ସେନାପତି ଯିବ । ସ୍ତ୍ରୀ, ଧନାଗାର ଓ ଦୁର୍ବଳ ଲୋକମାନେ ସେନାର ମଧ୍ୟଭାଗରେ ରହିବେ । ଦୁଇ ପାର୍ଶ୍ୱରେ ଅଶ୍ୱାରୋହୀମାନେ ଚାଲିବେ ଏବଂ ସେମାନଙ୍କ ପାର୍ଶ୍ୱରେ ରଥୀଗଣ ଅଗ୍ରସର ହେବେ । ରଥୀମାନଙ୍କ ପାର୍ଶ୍ୱରେ ହସ୍ତି-ସୈନ୍ୟ ରହିବ ଏବଂ ଚର୍ତୁ ପାର୍ଶ୍ୱରେ ପଦାତିକ ସେନା ଚାଲିବେ । ଭୟ, ପଥଶ୍ରମ ବା ଅନ୍ୟବିଧ କଷ୍ଟରେ ପୀଡ଼ିତ ସୈନିକମାନଙ୍କୁ ଆଶ୍ୱାସ ବଚନ କହି ସେନାପତି ପଶ୍ଚାଦ୍ଭାଗରେ ଧୀରେ ଧୀରେ ଅଗ୍ରସର ହେବ । ଶେଷରେ ରାଜା ବଳ ବଳ ମନ୍ତ୍ରୀ ଓ ମହାବୀରମାନଙ୍କ ସଙ୍ଗରେ ଧୀର ବାହାରିବ । ପର୍ବତ, ଜଳସମାକୀର୍ଣ୍ଣ ଉଚ୍ଚ ନୀଚ ସ୍ଥାନସକଳ ହସ୍ତୀ ସାହାଯ୍ୟରେ ପାର ହେବା ଉଚିତ । ଜଳରେ ନୌକା, ସମତଳ ସ୍ଥଳଭାଗରେ ଅଶ୍ୱସୈନ୍ୟ ଏବଂ ସକଳ ସ୍ଥାନରେ ପଦାତିକ ସେନା ଚଳାଇବାକୁ ହେବ । ବର୍ଷାକାଳରେ ହସ୍ତୀପୃଷ୍ଠରେ ଏବଂ ବର୍ଷା ଶେଷରେ ଅଶ୍ୱପୃଷ୍ଠରେ ଯାତ୍ରା କରିବା ସୁବିଧାଜନକ ।

ଯେତେବେଳେ ଯେଉଁ ସ୍ଥାନରେ ଯାହା ଦରକାର ହେବ, ପଦାତିକ ସେନା ସେତେବେଳେ ସେହି ସ୍ଥାନକୁ ଯାଇ ତାହା କରିବେ । ପର୍ବତ, ଦୁର୍ଗମପଥ ଓ ସଙ୍କଟ ସ୍ଥଳରେ ରାଜା ନିଜ ସୈନ୍ୟକୁ ଅତି ସାବଧାନତା ସହିତ ଚାଳନା କରିବ । ନିଜ ସୈନ୍ୟ ଦ୍ୱାରା ସୁରକ୍ଷିତ ହେଲେହେଁ ରାଜାକୁ ଯୋଗୀତୁଲ୍ୟ ସଜାଗ ହୋଇ ନିଦ୍ରା କରିବାକୁ ହେବ । ସମସ୍ତ କଣ୍ଟକଦୁର୍ଗ ଓ ସେନାନିବେଶ ନଷ୍ଟ କରି ଶତ୍ରୁପକ୍ଷର ସୈନ୍ୟକୁ ଉତ୍ଖାତ କରିବାକୁ ହେବ । ପଦାତିକ ସୈନ୍ୟଗଣକୁ ଆଗରେ ରଖି ଶତ୍ରୁ-ରାଜ୍ୟ ମଧ୍ୟରେ ପ୍ରବେଶ କରିବାକୁ ହେବ । କୋଷ ବିନା ରାଜାର ରାଜତ୍ୱ ମୂଲ୍ୟହୀନ, ଅତଏବ ରାଜା

---

ପବନେ ତରଙ୍ଗ ଲୀଳା ସଲିଳେ ଯେସନ;

ରହିବା ସ୍ଥାନରେ ରାଜ-କୋଷ ରଖାଯିବା ଉଚିତ । ସର୍ବଦା ଓ ସକଳ ସ୍ଥାନରେ ମନୁଷ୍ୟ ଅର୍ଥର ଦାସ—ମନୁଷ୍ୟ କେବେ ମନୁଷ୍ୟର ଦାସ ହୁଏ ନାହିଁ । ଅର୍ଥରେ ଗୌରବ—ଅର୍ଥରେ ବଳବ—ଅର୍ଥହିଁ ସବୁ । ସୈନିକମାନେ ଧନ ସକାଶେହିଁ ଯୁଦ୍ଧ କରିଥାନ୍ତି; ସେହି କାରଣରୁ ଉତ୍ତମ ଯୋଦ୍ଧାମାନଙ୍କୁ ଅର୍ଥଦାନରେ ସନ୍ତୁଷ୍ଟ କରିବା ବିଧେୟ । ସୈନିକମାନଙ୍କୁ ମନ ପ୍ରାଣ ଢାଳି ଦେଇ ଯୁଦ୍ଧ କରିବାକୁ ହେବ ଏବଂ ଯୁଦ୍ଧବେଳେ ଏକପ୍ରାଣ ହୋଇ ପରସ୍ପରକୁ ରକ୍ଷା କରିବାକୁ ହେବ । ଅସାର ଓ ଦୁର୍ବଳ ସୈନିକମାନଙ୍କୁ ବ୍ୟୂହର ମଧ୍ୟଭାଗରେ ରଖିବା ଉଚିତ । ରାଜାର ସ୍ୱୀୟ ପଦାତିକ ଦଳ ମଧ୍ୟ ବ୍ୟୂହ ମଧ୍ୟରେ ନିଯୁକ୍ତ କରାଯିବା ବିଧେୟ । ଶତ୍ରୁ-ଦୁର୍ଗ ଅବରୋଧ କରି ସେଠାର ପ୍ରଜାମାନଙ୍କୁ ନାନାପ୍ରକାର ପୀଡ଼ନ କରିବ । ଜଳପୂର୍ଣ୍ଣ ସ୍ଥଳରେ ନୌକାରେ ରହି ଏବଂ ସମତଳ ପ୍ରଦେଶରେ ଅଶ୍ୱ ଓ ରଥ ଚଢ଼ି ଯୁଦ୍ଧ ଚଳାଇବ । ବୃକ୍ଷ-ଗୁଳ୍ମାବୃତ ସ୍ଥାନରେ ଯୁଦ୍ଧ କରିବାବେଳେ ଧନୁ, ଶର, ଅସି ଓ ଚର୍ମ ବ୍ୟବହାର କରିବ । ଶତ୍ରୁପକ୍ଷର କାଷ୍ଠ, ତୃଣ, ଅନ୍ନ ଇତ୍ୟାଦି ଯେଉଁ ଯେଉଁ ପଦାର୍ଥ ଦେଖାଯିବ, ସେ ସବୁ ଦୂଷିତ କରିଦେବା ଯୁଦ୍ଧ-ଶାସ୍ତ୍ର-ସଙ୍ଗତ । ଶତ୍ରୁ ରାଜ୍ୟର ଜଳାଶୟ, ତଡ଼ାଗ, ପରିଖା, ପ୍ରାକାର ପ୍ରଭୃତି ଭାଙ୍ଗି ଛାରଖାର କରିବା ସମର-ନୀତି-ସମ୍ମତ । ସୈନ୍ୟ ମଧ୍ୟରେ ହସ୍ତୀହିଁ ପ୍ରଧାନ । ତାହା ନିକଟରେ ଅଶ୍ୱ, ରଥ ଓ ପତ୍ତି କିଛି ନୁହନ୍ତି କହିଲେ ଚଳେ । ହସ୍ତିର ଆଠ ଗୋଟି ଅଙ୍ଗ ଆଠଖଣ୍ଡି ଅସ୍ତ୍ର ସ୍ୱରୂପ । ସେ ନିଜର ସେହି ଆଠ ଅଙ୍ଗଦ୍ୱାରା ଭୟଙ୍କର ଯୁଦ୍ଧ କରିପାରେ ।

---

ଅନିତ୍ୟ ଏ ଭବ ଲୀଳା ଜାଣିବ ଚେତନ ।

ଦୁର୍ଗର ସୁଦୃଢ଼ ପ୍ରାକାର ଯେପରି ଦୁର୍ଗ ମଧ୍ୟରେ ଥିବା ସୈନ୍ୟଙ୍କୁ ରକ୍ଷାକରେ, ସ୍ଥଳ-ଯୁଦ୍ଧରେ ଅଶ୍ୱସେନାଗଣ ମଧ୍ୟ ସେପରି ଚତୁର୍ଦ୍ଦିଗରେ ରହି ମଧ୍ୟସ୍ଥିତ ସୈନିକମାନଙ୍କୁ ରକ୍ଷା କରନ୍ତି । ଅଶ୍ୱ-ସୈନ୍ୟଙ୍କୁ 'ଜଙ୍ଗମପ୍ରାକାର' ବୋଲି କୁହାଯାଇଥାଏ । ଅତଏବ ଯେଉଁ ରାଜାର ପ୍ରବଳ ଅଶ୍ୱସୈନ୍ୟ ଅଛି, ସେ ଯେ ସ୍ଥଳ-ଯୁଦ୍ଧରେ ଜୟଲାଭ କରି ପାରିବ ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ । ଅତ୍ୟୁକ୍ତିରେ ଆଶଙ୍କା ନ ଥାଇ କୁହାଯାଇପାରେ ଯେ, ଅଶ୍ୱାରୋହୀ ସୈନ୍ୟ ସଙ୍ଗରେ ଦେବତାମାନେ ସୁଦ୍ଧା ଯୁଦ୍ଧ କରିବାକୁ ଅକ୍ଷମ । ଶତ୍ରୁ-ସୈନ୍ୟ ଅତି ଦୂରରେ ଥିଲେ ମଧ୍ୟ ସେମାନେ ଅତି ସହଜରେ ଅଶ୍ୱାରୋହୀମାନଙ୍କର ହସ୍ତଗତ ହୋଇଥାନ୍ତି ।

ସୈନ୍ୟ-ରକ୍ଷା ଉପରେ ଜୟ-ଲାଭ ସମ୍ପୂର୍ଣ୍ଣ ନିର୍ଭର କରେ; ସୁତରାଂ ଯୁଦ୍ଧଯାତ୍ରା ବେଳେ ସେନା-ରକ୍ଷା ସର୍ବାଦୌ କରଣୀୟ । ପ୍ରଥମରେ ପଥର ସମସ୍ତ କଣ୍ଟକ ପରିଷ୍କାର କରି ସେହି ସକଳ ସ୍ଥାନ ସୁଗମ କରିବା ପଦାତିକ ସେନାଦଳର କାର୍ଯ୍ୟ । ନୀତି-ଶାସ୍ତ୍ରରେ ଲେଖାଅଛି, ଯେଉଁ ସେନା ବହୁସଂଖ୍ୟକ, ଶୌର୍ଯ୍ୟଶାଳୀ ଅନୁରକ୍ତ ଓ ଶସ୍ତ୍ରନିପୁଣ ବୀରମାନଙ୍କଦ୍ୱାରା ଗଠିତ ଏବଂ ଯାହା କଠୋର ବିପଦରେ ସୁଦ୍ଧା ସର୍ବଦା ଅଟଳ ଅଚଳ ରହେ, ତାହାହିଁ ସର୍ବଶ୍ରେଷ୍ଠ ସେନା । ଯୁଦ୍ଧବେଳେ ସୈନିକମାନଙ୍କ ମନରେ ଅପୂର୍ବ ଉତ୍ସାହ ଓ ଜାତୀୟ ମମତା ଉଦ୍ଭତ କରାଇବା ରାଜାର ଧର୍ମ । ବହୁତର ଅସାର ସୈନ୍ୟ ଅପେକ୍ଷା ଅତ୍ୟଳ୍ପ ସୁଦକ୍ଷ ସୈନ୍ୟ ଶ୍ରେଷ୍ଠତର; କାରଣ ଅସାର ସୈନ୍ୟ ରଣ-ଭଙ୍ଗ ଦେଲେ, ସେମାନଙ୍କ ସହିତ ସୁଦକ୍ଷ ସେନା ମଧ୍ୟ ହଟି

---

ଯେ କରେ ଅନିତ୍ୟ ଦେହ ପରହିତେ ଦାନ;
ସାର୍ଥକ ଜୀବନ ତାର, ସେହି ପୁଣ୍ୟବାନ ।

ଯାଆନ୍ତି । ପ୍ରଭୁ ଯଦି ସୈନ୍ୟ ଅବେକ୍ଷଣ ନକରେ, ପ୍ରସନ୍ନତା ନଦେଖାଏ, ଯଥାସମୟରେ ନିଜ କର୍ତ୍ତବ୍ୟ ପାଳନ ନକରେ, ବିପଦ ବେଳେ ସମସ୍ତଙ୍କୁ ରକ୍ଷା ନକରେ ଏବଂ ଲୋଭରେ ପଡ଼ି ସୈନ୍ୟର ଲାଭାଂଶ ହରିନିଏ, ତାହାହେଲେ ସୈନ୍ୟଗଣ ତାହା ପ୍ରତି କଦାପି ଅନୁରକ୍ତ ହୁଅନ୍ତି ନାହିଁ ।

'ଆପଣାର ସୈନ୍ୟ ପଥ-କଷ୍ଟରେ ପୀଡ଼ିତ ହେଲେ ସେମାନେ ଅତି ସହଜରେ ଶତ୍ରୁଦ୍ୱାରା ପରାଜିତ ହୁଅନ୍ତି; ଅତଏବ ନିଜ ସୈନ୍ୟଙ୍କୁ ପୀଡ଼ା ନଦେଇ ଜିଗୀଷୁ ଶତ୍ରୁ ସେନାକୁ ଆକ୍ରମଣ କରିବା ଉଚିତ । ଈର୍ଷା ଓ ବିଷୟ-ଲୋଭରେ ଦାୟାଦମାନେ ସହଜରେ ଧର୍ମର ଗୃହଶତ୍ରୁ ହୋଇ ପଡ଼ନ୍ତି । ସେମାନଙ୍କ ଭଳି ଅନ୍ୟ କେହି ଗୃହ ମଧ୍ୟରେ ଭେଦ ଘଟାଇ ପାରନ୍ତି ନାହିଁ । ଅତଏବ ଶତ୍ରୁ-ରାଜାର ଦାୟାଦମାନଙ୍କୁ ଗୁପ୍ତଭାବରେ ପ୍ରଲୋଭନ ଦେଖାଇ ତାହା ବିରୁଦ୍ଧରେ ସେମାନଙ୍କୁ ଉତ୍ତେଜିତ କରିବ । ଶତ୍ରୁ ସଙ୍ଗରେ ତାହାର ଦାୟାଦମାନଙ୍କ ବିବାଦ ଉପସ୍ଥିତ ହେଲେ, ତାହାକୁ ଆକ୍ରମଣ ଓ ଜୟ କରିବା ଅତି ସହଜ ହୋଇପଡ଼େ । ଶତ୍ରୁ-ରାଜାର ଯୁବରାଜ କିମ୍ବା ପ୍ରଧାନମନ୍ତ୍ରୀକୁ କୌଶଳରେ ସ୍ୱପକ୍ଷକୁ ଆଣି ଶତ୍ରୁର ଗୃହ-ବିଚ୍ଛେଦ ଘଟାଇ ପାରିଲେ, ତାହାକୁ ପରାସ୍ତ କରିବା କଷ୍ଟକର ହୁଏ ନାହିଁ । ମିତ୍ରପକ୍ଷର କୌଣସି ରାଜା ଯଦି ଯୁଦ୍ଧରେ ସହାୟ ହେବାକୁ ଆସି ଯୁଦ୍ଧ କାଳରେ ଶଠତା ପ୍ରକାଶ କରେ, ତାହାହେଲେ ଶତ୍ରୁ ସହିତ ରଣରେ ଭଙ୍ଗ ଦେଇ ସୁଦ୍ଧା ପ୍ରଥମରେ ସେହି ବିଶ୍ୱାସଘାତକ କପଟମିତ୍ରକୁ ବିନଷ୍ଟ କରିବ, ତାହାର ଲୋକମାନଙ୍କୁ ବନ୍ଧନ କରିବ ଏବଂ ତାହାର ଯାନ, ବାହନ ପ୍ରଭୃତି ସମସ୍ତ ପଦାର୍ଥ ଲୁଣ୍ଠନ କରି ନେବ । କାରଣ, କପଟବନ୍ଧୁ

ଏ ବିଶ୍ୱ ଜାଣ ହେ ଖାଲି ପ୍ରେମର ବନ୍ଧନ,

ଯୁଦ୍ଧ ବେଳେ ସଙ୍ଗରେ ରଖିଲେ ସର୍ବନାଶ ଘଟିବାର ସମ୍ଭାବନା । ଦାନ, ମାନ, ଛଳ ବା ବଳରେ ଶତ୍ରୁର ପ୍ରଜାମାନଙ୍କୁ ନିଜ ଦେଶରେ ଆଣି ରଖିବା ବିଧେୟ; କାରଣ, ସେପରି କରିବାଦ୍ୱାରା ଆପଣା ରାଜ୍ୟରେ ପ୍ରଜା-ସଂଖ୍ୟାର ବୃଦ୍ଧି ସଙ୍ଗେ ସଙ୍ଗେ ରାଜ୍ୟର ଆଦାୟ ମଧ୍ୟ ବଢ଼ିଥାଏ । ମହାରାଜ ! ଆଉ ଅଧିକ କଣ କହିବି ? ପଣ୍ଡିତମାନଙ୍କ ମତରେ—

ନିଜର ଉଦୟ ଆଉ ବିପକ୍ଷର କ୍ଷୟ,
ସମସ୍ତ ନୀତିର ମର୍ମ ଏ ଦୁଇ ବିଷୟ ।

ଚିତ୍ରବର୍ଣ୍ଣ ହାସ୍ୟ କରି କହିଲେ—'ଏହା ସତ୍ୟ—ନୀତିଶାସ୍ତ୍ର ଅନୁସାରେ ଶତ୍ରୁକୁ ବିପଦରେ ପଡ଼ିବାର ଦେଖି ତାହାକୁ ଆକ୍ରମଣ କରିବା ଉଚିତ । ଅବଶ୍ୟ ସାଧାରଣ ରାଜା ପକ୍ଷରେ ଏହି ବ୍ୟବସ୍ଥା କରାଯାଇ ଅଛି । କିନ୍ତୁ ଅତି ବଳଶାଳୀ ରାଜା ଏହି ନୀତି ଅନୁସରଣ କରି ପାରିବ ନାହିଁ । ସୂର୍ଯ୍ୟାଲୋକ ଓ ଅନ୍ଧକାର ମଧ୍ୟରେ ଯେଉଁ ପ୍ରଭେଦ; ଅସାଧାରଣ ତେଜସ୍ୱୀ ରାଜା ଓ ଜଣେ ସାମାନ୍ୟ ରାଜା ମଧ୍ୟରେ ସେହି ପ୍ରଭେଦ । ଅନ୍ଧକାର ପକ୍ଷରେ ଯେଉଁ ବ୍ୟବସ୍ଥା କରାଯାଏ, ତାହା ଯେପରି ଆଲୋକ ପକ୍ଷରେ ଖଟେ ନାହିଁ, ସେପରି ସାଧାରଣ ଶ୍ରେଣୀର ରାଜା ସକାଶେ ଯେଉଁ ନିୟମ କରାଯାଇଅଛି, ତାହା ପ୍ରବଳ ରାଜା ପ୍ରତି କଦାପି ପ୍ରଯୁଜ୍ୟ ନୁହେଁ ।'

ପରେ ଚିତ୍ରବର୍ଣ୍ଣ ସିଂହାସନରୁ ଉଠି ଦୈବଜ୍ଞ ସ୍ଥିର କରିଥିବା ଶୁଭ ଲଗ୍ନରେ ଯୁଦ୍ଧ-ଯାତ୍ରା ଆରମ୍ଭ କଲେ ।

ଗୁପ୍ତଚର ଆସି ହିରଣ୍ୟଗର୍ଭଙ୍କୁ ପ୍ରଣାମ କରି କହିଲେ— 'ମହାରାଜ, ରାଜା ଚିତ୍ରବର୍ଣ୍ଣ ଆଗତପ୍ରାୟ । ସେ ଏବେ ମଳୟ ପର୍ବତର ଉପତ୍ୟକାରେ । ପ୍ରତି ମୁହୂର୍ତ୍ତ ଆମ୍ଭ ଦୁର୍ଗ ସମ୍ବନ୍ଧରେ ବିଶେଷ ଯତ୍ନ

---

ନେବା ଆବଶ୍ୟକ । କାରଣ, ଶତ୍ରୁ ରାଜାର ମନ୍ତ୍ରୀ ଗୃଧ୍ର ଅତି ଚତୁର । ସେ ଅନ୍ୟ ଜଣକ ସହିତ ବିଶ୍ୱସ୍ତଭାବରେ କଥାବାର୍ତ୍ତା କରୁଥିବାବେଳେ, ମୁଁ ତାହା ଆକାର-ଇଙ୍ଗିତରୁ ବୁଝି ପାରିଲି ଯେ, ପୂର୍ବେ ଶତ୍ରୁ-ନିଯୁକ୍ତ କେହି ଜଣେ ଆସି ଆମ୍ଭ ଦୁର୍ଗ ମଧ୍ୟରେ ପ୍ରବେଶ କରିଅଛି ।

ଚକ୍ରବାକ କହିଲା—'ମହାରାଜ, ସେହି ମେଘବର୍ଣ୍ଣ ନାମକ କାକହିଁ ଶତ୍ରୁପକ୍ଷର ବୋଲି ମୋର ଆଶଙ୍କା ।' ହିରଣ୍ୟଗର୍ଭ କହିଲା—'ତାହା ନିତାନ୍ତ ଅସମ୍ଭବ । ସେ ଶତ୍ରୁପକ୍ଷର ହୋଇଥିଲେ, ସେଦିନ ଶତ୍ରୁ-ଦୂତ ଶୁକକୁ ମାରିବା ପାଇଁ କାହିଁକି ଉଦ୍ୟତ ହୋଇଥାନ୍ତା ? ଶୁକ ଆସିବା କ୍ଷଣି ତ ଯୁଦ୍ଧ ବିଷୟରେ ଉତ୍ସାହ ଦେଖାଇଲା ଏବଂ ସେ ଏଠାରେ ଅନେକ ଦିନ ହେଲା ଅଛି ।'

ଚକ୍ରବାକ—ତଥାପି ଆଗନ୍ତୁକ ବୋଲି ତାହାକୁ ଶଙ୍କା କରିବା ଉଚିତ ।

ହିରଣ୍ୟଗର୍ଭ—ଆଗନ୍ତୁକମାନେ ବି ସମସ୍ତ ସମୟରେ ପ୍ରତ୍ୟୁପକାର କରିଥାନ୍ତି । ଦେଖ, ପର ହେଲେହେଁ ଯେ ଉପକାର କରେ, ସେ ପ୍ରକୃତ ବନ୍ଧୁ ଏବଂ ଆତ୍ମୀୟ ହେଲେହେଁ ଯେ ଅପକାର ସାଧନ କରେ, ସେ ପର । ଆପଣା ଶରୀରରେ ଜାତ ହୋଇ ମଧ୍ୟ ରୋଗ ଅନିଷ୍ଟ କରିଥାଏ, କିନ୍ତୁ ଔଷଧ ବନରୁ ଅଣାଗଲେହେଁ ତାହା ରୋଗ ଦୂର କରି ହିତସାଧନ କରିଥାଏ । ବୀରବର ନାମରେ ଶୂଦ୍ରକ ରାଜାଙ୍କର ଜଣେ ଭୃତ୍ୟ ଥିଲା; ସେ ନିଜ ପ୍ରଭୁ ସକାଶେ ଆପଣାର ପ୍ରାଣାଧିକ ପୁତ୍ରକୁ ମଧ୍ୟ ବଳି ଦେଇଥିଲା ।

ଚକ୍ରବାକ—କିପରି ?

ହିରଣ୍ୟଗର୍ଭ—

---

## ରାଜପୁତ୍ର ବୀରବର

ଏଥି ପୂର୍ବେ ମୁଁ ଶୂଦ୍ରକ ରାଜାଙ୍କ କ୍ରୀଡ଼ା-ସରୋବରରେ କର୍ପୂରକେଳୀନାମକ ରାଜହଂସର କନ୍ୟା କର୍ପୂରମଞ୍ଜରୀ ସହିତ ପରମ ପ୍ରୀତି-ସୁଖରେ ବାସ କରୁଥିଲି । ତନେ ଜଣେ ରାଜପୁତ୍ର କୌଣସି ଏକ ଦୂରଦେଶରୁ ଆସି ଶୂଦ୍ରକ ରାଜାଙ୍କ ଦ୍ୱାରରେ ଉପସ୍ଥିତ ହେଲା । ସେ ଯାଇ ପ୍ରତିହାରୀକୁ କହିଲା—'ମୁଁ ବୃତ୍ତିଆ ସକାଶେ ଆସିଛି । ଅନୁଗ୍ରହପୂର୍ବକ ମୋତେ ନେଇ ମହାରାଜଙ୍କ ସହିତ ସାକ୍ଷାତ୍ କରାଇ ଦିଅ । ମୁଁ ଜାତିରେ ରାଜପୁତ୍ର କ୍ଷତ୍ରିୟ ।' ପ୍ରତିହାରୀ ସେହିକ୍ଷଣି ତାହାକୁ ସଙ୍ଗରେ ଧରି ରାଜାଙ୍କ ନିକଟକୁ ଗଲା । ରାଜା ତାହାର ନାମ ଧାମ ଓ ଆସିବାର ଉଦ୍ଦେଶ୍ୟ ପଚାରିଲେ । ବୀରବର ସମସ୍ତ କଥା କହିଲା । ଶେଷରେ ଶୂଦ୍ରକ ତାହାକୁ ନିଜ ସେବକରୂପେ ନିଯୁକ୍ତ କରିବାକୁ ସ୍ୱୀକୃତ ହେବାରୁ ବୀରବର କହିଲା—'ମହାରାଜ ! ପ୍ରଥମରେ ମୋର ବେତନ ସ୍ଥିର କରନ୍ତୁ ।'

ରାଜା ସେ ଲୋକ୍‌ଟିର ବେତନର ପରିମାଣ ପଚାରିବାରୁ, ବୀରବର କହିଲା—'ପ୍ରତ୍ୟହ ଚାରିଶତ ସ୍ୱର୍ଣ୍ଣମୁଦ୍ରା ।' ରାଜା ପଚାରିଲେ —'ତୁମ୍ଭେ କାର୍ଯ୍ୟ ସାଧନ ନିମନ୍ତେ କ କଣ ଉପକରଣ ଆଣିଅଛ ?' ବୀରବର ଉତ୍ତର କଲା—'ମୋର ଦୁଇ ବାହୁ ଓ ଖଡ୍‌ଗ—ମୋ'ଠାରେ ଏହି ତିନୋଟି ମାତ୍ର ଉପକରଣ ଅଛି ।'

ଶୂଦ୍ରକ ପ୍ରଭୃତିନ ସେତେ ବେତନ ଦେଇ ପାରିବେ ନାହିଁ ବୋଲି କହିବାରୁ ବୀରବର ତାଙ୍କୁ ପ୍ରଣାମ କରି ସେଠାରୁ ଚାଲିଗଲା । ପରେ ମନ୍ତ୍ରୀମାନେ କହିଲେ—'ମହାରାଜ ! ଅନ୍ତତଃ ଚାରି ଦିନର

---

ବେତନ ଦେଇ ଵୀରବରର ଗୁଣ ପରୀକ୍ଷା କରନ୍ତୁ । ସେ ଏତେ ପାଇବାର ଉପଯୁକ୍ତ କି ନାହିଁ ଜଣାଯିବ ।' ରାଜା ସେମାନଙ୍କ କଥାରେ ବୀରବରଙ୍କୁ ଡକାଇ ତାହା ହସ୍ତରେ ତାମ୍ବୁଳ ଦେଲେ ଏବଂ ସେ ଲୋଡ଼ିବା ବେତନ ଦେଇ ତାହାକୁ ନିଯୁକ୍ତ କଲେ ।

ବୀରବର ସେହି ବେତନ କିପରି ବ୍ୟୟ କରୁଥାଏ, ରାଜା ଗୋପନରେ ତହିଁର ଅନୁସନ୍ଧାନ କଲେ । ବୀରବର ପ୍ରତ୍ୟହ ବେତନର ଅର୍ଦ୍ଧାଂଶ ଦେବତା ଓ ବ୍ରାହ୍ମଣମାନଙ୍କୁ ଦାନ କରୁଥାଏ ଏବଂ ଅବଶିଷ୍ଟ ଧନର ଅଧିକାଂଶ ହୀନ ଓ ଦୁଃଖୀମାନଙ୍କୁ ଦେଉଥାଏ । ଶେଷରେ ଯାହା କିଛି ବଳକା ରହେ, ସେଥିରେ ଭକ୍ଷ୍ୟ ଦ୍ରବ୍ୟ ଓ ବିଳାସ ସାମଗ୍ରୀ କିଣୁଥାଏ । ସେ ପ୍ରତିଦିନ ଏହି ସମସ୍ତ କାର୍ଯ୍ୟ ଶେଷ କରି ଖଡ଼୍ଗ ଧରି ରାଜଦ୍ୱାରରେ ଯାଇ ରହୁଥାଏ । ରାଜାଙ୍କ ବିନାନୁମତିରେ କେଉଁଠାକୁ ଯାଉ ନଥାଏ ।

ଦିନେ କୃଷ୍ଣ ପକ୍ଷର ଚତୁର୍ଦ୍ଦଶୀ ରାତିରେ ଶୂଦ୍ରକ କେହି ଜଣେ କରୁଣ କଣ୍ଠରେ ରୋଦନ କରିବାର ଶୁଣିଲେ । ସେତେବେଳେ ଅର୍ଦ୍ଧରାତି—ଭୟଙ୍କର ଅନ୍ଧକାର—ଅଳ୍ପ ଅଳ୍ପ ବୃଷ୍ଟି ହେଉଥିଲା । ରାଜା ଦ୍ୱାର ନିକଟକୁ ଯାଇ ପଚାରିଲେ—'ଏବେ ଦ୍ୱାର ଦେଶରେ କେଉଁମାନେ ଅଛନ୍ତି ?' ବୀରବର ହଠାତ୍ ଉତ୍ତର କଲା—'ଆଜ୍ଞା, ମୁଁ—ବୀରବର ଅଛି ।' ରାଜା କହିଲେ—'ବୀରବର, ତୁମ୍ଭେ ଅତି-ଶୀଘ୍ର ଯାଇ ଏହି ରୋଦନ-ଧ୍ୱନିର କାରଣ ବୁଝି ଆସ ।' ବୀରବର 'ଯେ ଆଜ୍ଞା' କହି ସେହିକ୍ଷଣି ସେଠାରୁ ଚାଲିଗଲା । ସେ ଯିବାର କିଛିକ୍ଷଣ ପରେ ରାଜା ଭାବିଲେ—'ଏହି ଘୋର ଅନ୍ଧକାର ରାତିରେ

---

ବିଦ୍ୟାରେ ବିନୟ ହୁଏ, ବିନୟେ ସୁପାତ୍ର;

ଖାରବରକୁ ଏକାକୀ ପଠାଇ ମୁଁ ଭଲ କାର୍ଯ୍ୟ କରିନାହିଁ । ଅତଏବ ମୁଁ ମଧ୍ୟ ଯାଇ ତାହାର ଅନୁସନ୍ଧାନ କରିବି ।'

ଶୂଦ୍ରକ ସେହି ମୁହୂର୍ତ୍ତରେ ଖଡ୍ଗ ଧରି ଖାରବରର ପଛେ ପଛେ ଗଲେ । କ୍ରମେ ନଗର-ଦ୍ୱାର ଅତିକ୍ରମ କରି ଗଲେ । ଏଣେ ଖାରବର ନଗର ବାହାରେ ଥିବା ଉଦ୍ୟାନରେ ଯାଇ ଦେଖିଲା ଯେ, ସର୍ବାଳଙ୍କାରଭୂଷିତା ଅତି ରୂପବତୀ ଜଣେ ଯୁବତୀ ଲୋତକରେ ନିଜ ବକ୍ଷ ଭସାଇ ଦେଇ କାତର ସ୍ୱରରେ କାନ୍ଦୁଅଛି । ତାହାର ଅଳଙ୍କାର ଜ୍ୟୋତିରେ ଉପବନଟି ଆଲୋକମୟ ହୋଇଅଛି । ଖାରବର ବିସ୍ମୟ ସହିତ ଯୁବତୀକୁ ପଚାରିଲେ—'କିଏ ମା ତୁମେ ? ଏଠାରେ ଏତେ ରାତିରେ କାନ୍ଦୁଛ କାହିଁକି ?'

ଯୁବତୀ ହଠାତ୍ କ୍ରନ୍ଦନରୁ କ୍ଷାନ୍ତ ହୋଇ ମଳିନ ମୁଖରେ କହିଲା—'ମୁଁ ଏହି ନଗରର ରାଜଲକ୍ଷ୍ମୀ । ଶୂଦ୍ରକଙ୍କ ବାହୁବଳର ଆଶ୍ରୟରେ ବହୁକାଳ ପରମ ସୁଖ-ସନ୍ତୋଷରେ ଥିଲି । ଦୁଃଖର ବିଷୟ, ରାଜା ଦେବୀ ସର୍ବମଙ୍ଗଳାଙ୍କ ନିକଟରେ ଘୋର ଅପରାଧ କରିଥିବା ଯୋଗୁଁ ସେ ଏ ତିନି ଦିନ ମଧ୍ୟରେ ମୃତ୍ୟୁପ୍ରାପ୍ତ ହେବେ । ମୁଁ ତାଙ୍କ ବିରହରେ ଅନାଥା ହେବି । ଏବେ ମୋତେ ରାଜାଶ୍ରୟ ଛାଡ଼ିବାକୁ ହେବ ବୋଲି ଦୁଃଖରେ କାନ୍ଦୁଅଛି ।"

ଏହି ଦାରୁଣ ସମ୍ବାଦରେ ପ୍ରଭୁଭକ୍ତ ଖାରବରର ମୁଖ ଏକାବେଳକେ ଶୁଖିଗଲା । ତାହାର ସେତେବେଳେ ମନେ ହେଲା, ସତେ ଯେପରି ବଜ୍ରପାତରେ ବଗିଯାଇଛି ତାହାକୁ ଧରି ରସାତଳକୁ

ସୁପାତ୍ର ହୋଇଲେ ଧନ ଲଭେ ସେ ସର୍ବତ୍ର ।

ଖସିଯାଉଛି । କିନ୍ତୁ ସେ ବିପଦରେ ଅଧୀର ହେବାର ଲୋକ ନ ଥିଲା । ସେ ସେହିକ୍ଷଣି ମନରେ ଦମ୍ଭ ବାନ୍ଧି ଉତ୍କଣ୍ଠା ସହିତ ରାଜଲକ୍ଷ୍ମୀଙ୍କୁ କହିଲା—'ମା, କ'ଣ କଲେ ତୁମ୍ଭେ ରାଜାଙ୍କ ନିକଟରେ ପୁଣି ସୁଖରେ ରହି ପାରିବ ?' ଲକ୍ଷ୍ମୀ କହିଲେ—'ତୁମେ ଯଦି ବତିଶଶୁଭଲକ୍ଷଣଯୁକ୍ତ ତୁମର ଏକମାତ୍ର ପୁତ୍ର ଶକ୍ତିଧରର ମସ୍ତକ ସ୍ୱହସ୍ତରେ କାଟି ଭଗବତୀ ସର୍ବମଙ୍ଗଳାଙ୍କୁ ଉପହାର ଦେଇପାର, ତାହାହେଲେ ରାଜାଙ୍କର ଶତବର୍ଷ ପରମାୟୁ ହେବ, ମୁଁ ପୁଣି ତାଙ୍କଠାକୁ ଯାଇ ଚିରକାଳ ସୁଖ-ସନ୍ତୋଷରେ ରହିପାରିବି ।'

ଲକ୍ଷ୍ମୀ ଏହା କହି ଅଦୃଶ୍ୟ ହୋଇଗଲେ । ବୀରବରର ଆନନ୍ଦ ଓ ଆଶା ଆଉ ତାର ସୀମା ମାନିଲା ନାହିଁ । ସେ ସେହି ମୁହୂର୍ତ୍ତରେ ନିଜ ଘରକୁ ଧାଇଁଗଲା । ସେତେବେଳେ ତାହାର ସ୍ତ୍ରୀ ଓ ପୁତ୍ର ନିଦ୍ରିତ । ସେମାନଙ୍କୁ ଉଠାଇ ସମସ୍ତ କଥା ଶୁଣାଇଲା । ତାହା ଶୁଣି ଶକ୍ତିଧର ଆନନ୍ଦରେ ନାଚି ଉଠିଲା । ସେ ହସି ହସି କହିଲା—'ଆହା, ଧନ୍ୟ ମୋର ଜୀବନ ! ଆଜି ମୁଁ ପ୍ରଭୁଙ୍କ ମଙ୍ଗଳ ପାଇଁ ପ୍ରାଣ ଦେଇ ଜନ୍ମ ସାର୍ଥକ କରିବି ! ବାପା ! ଏ ପବିତ୍ର କାର୍ଯ୍ୟରେ ଆଉ ଅଧିକ ବିଳମ୍ବ କରିବା ଅନୁଚିତ । ଏହି ମହତ୍ତ୍ୱ କାର୍ଯ୍ୟ କରିବା ନିମନ୍ତେ ଏହି ଦେହ ଦାନ କରିବା ଅପେକ୍ଷା ଆଉ ଅଧିକ ଗୌରବର କଥା କ'ଣ ହୋଇପାରେ ? ଏହାଠାରୁ ବଳି ଆଉ ଧର୍ମ ନାହିଁ ।'

'ପର ହିତେ ଧନ ପ୍ରାଣ ଯେଉଁ ଜନ କରେ ଦାନ
ତାହାକୁହିଁ ପ୍ରାଜ୍ଞ ବୋଲି ଜାଣିବ ନିଶ୍ଚୟେ,
ଏହି ଭବେ ଚିରଦିନ ନ ରହିବ ଏ ଜୀବନ
ସୁକାର୍ଯ୍ୟେ ତ୍ୟଜିଲେ ତାର ସାର୍ଥକତା ହୁଏ ।'

---

ଯାହା କିଛି ଧନରତ୍ନ ଅଛି ଏ ଜଗତେ,

ବୀରବରର ସ୍ତ୍ରୀ କହିଲା—'ଯଦି ଆମ୍ଭେମାନେ ଆମ୍ଭ କୁଳୋଚିତ ଏହି ଧର୍ମ ପାଳନ ନ କରୁଁ, ତାହାହେଲେ ରାଜାଙ୍କଠାରୁ ଯେଉଁ ବେତନ ଗ୍ରହଣ କରୁଅଛୁଁ, ସେହି ଋଣରୁ କପରି ମୁକ୍ତ ପାଇ ପାରିବା ?'

ପରେ ତିନି ଜଣ ସର୍ବମଙ୍ଗଳାଙ୍କ ମନ୍ଦିରକୁ ଗଲେ । ସେଠାରେ ଦେବୀଙ୍କର ଯଥାବିଧି ପୂଜାଦି କରି ବୀରବର କହିଲା—ଦେବୀ, ସର୍ବମଙ୍ଗଳେ ! ତୁମ ନିକଟରେ ମୋ ପୁତ୍ରକୁ ବଳି ଦେଉଛୁ—ତାହାକୁ ଗ୍ରହଣ କରି ପ୍ରସନ୍ନା ହୁଅ । ମହାରାଜ ଶୂଦ୍ରକଙ୍କୁ ଚିରଜୀବୀ ଓ ଚିରଜୟୀ କର ।' ତିନି ଜଣ ଦେବୀଙ୍କୁ ସାଷ୍ଟାଙ୍ଗ ପ୍ରଣାମ କଲେ । ସେମାନଙ୍କ ଆନନ୍ଦର ଆଉ ସୀମା ରହିଲା ନାହିଁ । ପରେ ବୀରବର ନିଜ ଖଡ୍‌ଗରେ ଶକ୍ତିଧରର ମସ୍ତକ କର୍ତ୍ତନ କଲା । କିଛିକ୍ଷଣ ପରେ ଭାବିଲା—'ମୁଁ ଏହି ପବିତ୍ର କାର୍ଯ୍ୟଦ୍ୱାରା ପ୍ରଭୁଙ୍କ ଋଣରୁ ମୁକ୍ତ ହୋଇଅଛି । ବର୍ତ୍ତମାନ ପୁତ୍ରଶୋକରେ ଜୀବନ ଧାରଣ କରିବା କଷ୍ଟକର । ପୁତ୍ରହୀନ ଲୋକ ଜୀବିତ ରହି ବା ଲାଭ କ'ଣ ?' ଏହା ଭାବି ସେ ନିଜ ମସ୍ତକ କାଟି ଦେଲା । ଏହା ଦେଖି ତାର ସ୍ତ୍ରୀ ବା କପରି ସଂସାରରେ ରହନ୍ତା ! ପତି-ପୁତ୍ର ଶୋକରେ ଅଧୀରା ହୋଇ ସେ ମଧ୍ୟ ଖଡ୍‌ଗଦ୍ୱାରା ଆତ୍ମହତ୍ୟା କଲା ।

ରାଜା ଶୂଦ୍ରକ କିଛି ଦୂରରେ ଲୁଚି ରହି ଏହି ସମସ୍ତ ବ୍ୟାପାର ଦେଖୁଥିଲେ । ତିନି ଜଣଙ୍କର ଅଦ୍ଭୁତ ମରଣ ଦେଖି ତାଙ୍କ ଦୁଃଖ ଓ ବିସ୍ମୟର ସୀମା ରହିଲା ନାହିଁ । ସେ ଭାବିଲେ—'ମୋ ପରି ନଗଣ୍ୟ ମନୁଷ୍ୟ ଯେ କେତେ ଜନ୍ମଲାଭ କରି ମରୁଅଛନ୍ତି, ତାହାର

---

'ବିଦ୍ୟା-ଧନ ସବୁଠାରୁ ଶ୍ରେଷ୍ଠ ସର୍ବ ମତେ ।

ସଂଖ୍ୟା ନାହିଁ । କିନ୍ତୁ ଶାଉବରଭୁଲ୍ୟ ପୁତ୍ରବିରହ ଆଜିପର୍ଯ୍ୟନ୍ତ ଜନ୍ମଗ୍ରହଣ କରି ନାହିଁ ଏବଂ ଭବିଷ୍ୟତରେ ତାହା ପରି ଅନ୍ୟ କେହି ଯେ ଜନ୍ମଲାଭ କରିବେ, ଏହା ବିଶ୍ୱାସଯୋଗ୍ୟ ନୁହେ । ଏପରି ସେବକର ବିରହରେ ରାଜ୍ୟ ଶାସନ କରିବା ନିଷ୍ପ୍ରୟୋଜନ—ଜୀବନ ଧରି ରହିବା କଷ୍ଟକର ।'

ଏହା କହି ଶୂଦ୍ରକ ଆତ୍ମହତ୍ୟା କରିବାକୁ ଉଦ୍ୟତ ହୋଇଅଛନ୍ତି, ଏପରି ସମୟରେ ଭଗବତୀ ସର୍ବମଙ୍ଗଳା ହଠାତ୍ ଦେଖା ଦେଇ ରାଜାଙ୍କ ହସ୍ତ ଧରି କହିଲେ—'କ୍ଷାନ୍ତ ହୁଅ ବତ୍ସ ! ଏପରି ଦୁଃସାହସ କର ନାହିଁ । ମୁଁ ତୁମ ପ୍ରତି ପ୍ରସନ୍ନ ହୋଇଅଛି । ବର୍ତ୍ତମାନ ତୁମ ରାଜ୍ୟନାଶର ଆଉ ଆଶଙ୍କା ନାହିଁ । ବର ପ୍ରାର୍ଥନା କର ।' ରାଜା ଦେବୀଙ୍କୁ ସାଷ୍ଟାଙ୍ଗ ପ୍ରଣାମ କରି କହିଲେ—'ମା, ମୋର ରାଜ୍ୟରେ କିମ୍ବା ଜୀବନରେ ପ୍ରୟୋଜନ ନାହିଁ । ମୋ ପ୍ରତି ତୁମର ଯଦି ଅନୁକମ୍ପା ଥାଏ, ତାହାହେଲେ ମୋର ଅବଶିଷ୍ଟ ପରମାୟୁ ଦେଇ ଶାଉବରକୁ ଏବଂ ତାହାର ପତ୍ନୀ ଓ ପୁତ୍ରକୁ ପୁନର୍ଜୀବିତ କର । ନଚେତ୍ ଏମାନଙ୍କର ଯେଉଁ ଗତି, ମୋର ମଧ୍ୟ ସେହିଗତି ।'

ଭଗବତୀ କହିଲେ—'ତୁମ୍ଭେ ଅତିଶୟ ସାଧୁ ଓ ଭୃତ୍ୟବତ୍ସଳ, ତେଣୁ ମୁଁ ତୁମ୍ଭ ପ୍ରତି ପରମ ସନ୍ତୁଷ୍ଟ ହୋଇଅଛି । ଯାଅ ବତ୍ସ, ଚିରଜୀବୀ ହୁଅ । ଏହି ରାଜପୁତ୍ର ମଧ୍ୟ ସପରିବାର ପୁନର୍ବାର ଜୀବିତ ହେଉ ।' ଏହା କହି ସର୍ବମଙ୍ଗଳା ଅନ୍ତର୍ହିତା ହେଲେ ।

ଶାଉବର ନିଜ ସ୍ତ୍ରୀ-ପୁତ୍ର ସହିତ ପୁନର୍ବାର ଜୀବନ ଲାଭ କରି ଗୃହକୁ ଫେରିଲା । ଶୂଦ୍ରକ ଅଲକ୍ଷିତଭାବରେ ସେଠାରୁ ଚାଲି ଯାଇ

---

ସାର୍ଥକ ଜନମ ତା'ର, ଯାହାର ଜନମ;

ଅନ୍ତଃପୁର ମଧ୍ୟରେ ପ୍ରବିଷ୍ଟ ହେଲେ । କର୍ତ୍ତବ୍ୟପରାୟଣ ବୀରବର ପୁନର୍ବାର ରାଜଭବନର ଦ୍ୱାରରେ ଯାଇ ଉପସ୍ଥିତ ହେଲା । ରାଜା ତାହାକୁ ସମ୍ବାଦ ପଚାରିବାରୁ ସେ କହିଲା—'ମହାରାଜ, ଜଣେ ଯୁବତୀ ବିଳାପ କରୁଥିଲା; ମୋତେ ଦେଖିବା ମାତ୍ରେ ଅଦୃଶ୍ୟ ହୋଇଗଲା । ଏହା ଛଡ଼ା ଅନ୍ୟ କୌଣସି ସମ୍ବାଦ ନାହିଁ ।'

ଏହା ଶୁଣି ଶୂଦ୍ରକ ଅଧିକ ପ୍ରୀତ ଓ ଚକିତ ହେଲେ । ଭାବିଲେ, ଏପରି ମହାପୁରୁଷ କଦାପି ଆତ୍ମଶ୍ଳାଘା କରିବ ନାହିଁ । ସର୍ବଦା ସରଳ ଓ ଉଦାର ଭାବରେ ସମସ୍ତଙ୍କୁ ମିଷ୍ଟ କଥା କହିବା ବିଧେୟ । ସ୍ୱାର୍ଥସିଦ୍ଧି ନିମନ୍ତେ କପଟ ମଧୁର ବଚନ ପ୍ରକାଶ କରିବା ଏକାନ୍ତ ଅନୁଚିତ । ଯୋଗ୍ୟପାତ୍ରଙ୍କୁ ପ୍ରଚୁର ଧନ ଦାନ କରିବା ଦାତାର ଧର୍ମ । ସାହସୀ ହୋଇ ଅନ୍ୟ ପ୍ରତି ନିଷ୍ଠୁରତା ଦେଖାଇବା ଦୋଷାବହ । ମହାପୁରୁଷର ଏହି ସମସ୍ତ ଲକ୍ଷଣ ବୀରବରଠାରେ ଦେଖାଯାଏ ।

ପରଦିନ ସକାଳେ ରାଜା ନଗରର ଶିଷ୍ଟ ଲୋକମାନଙ୍କୁ ଡକାଇ ସେମାନଙ୍କ ଆଗରେ ରାତ୍ରିର ସମସ୍ତ ଘଟଣା ପ୍ରକାଶ କଲେ ଏବଂ କୃତଜ୍ଞତାର ନିଦର୍ଶନସ୍ୱରୂପ ବୀରବରଙ୍କୁ କର୍ଣ୍ଣାଟ ରାଜ୍ୟ ପ୍ରଦାନ କଲେ ।

ଅତଏବ ଆଗନ୍ତୁକ ହେବା ମାତ୍ରେ ଯେ ସେ ଅବିଶ୍ୱାସୀ, ଏହା କଦାପି କୁହାଯାଇ ନ ପାରେ । ଆଗନ୍ତୁକମାନଙ୍କ ମଧ୍ୟରେ ତ ପୁଣି ଉତ୍ତମ, ମଧ୍ୟମ ଓ ଅଧମ—ଏହି ତିନିପ୍ରକାର ଲୋକ ଥାଇ ପାରନ୍ତି ।

ଚକ୍ରବାକ କହିଲା—'ମହାରାଜ, ରାଜାଙ୍କୁ ସନ୍ତୁଷ୍ଟ କରିବା ଉଦ୍ଦେଶ୍ୟରେ ଯେଉଁ ଲୋକ ଅହିତ କରେ ଏବଂ ରାଜାର ଅପବ୍ୟୟ ଓ

ବଂଶର ଗୌରବ ବୃଦ୍ଧି କରେ ଅନୁକ୍ରମ ।

ଅତ୍ୟାଗ୍ଧରର ଅନୁମୋଦନ କରେ, ସେ କଦାପି ମନ୍ତ୍ରି-ପଦ-ଯୋଗ୍ୟ ନୁହେଁ; କାରଣ, ତାହା ଯୋଗୁଁହିଁ ରାଜା ଲକ୍ଷ୍ମୀଛଡ଼ା ହୋଇଥାଏ । ରାଜା ବିରକ୍ତ ହେଲେହେଁ ତାହାଙ୍କୁ ସର୍ବଦା ସୁମନ୍ତ୍ରଣା ଦେବା ପ୍ରକୃତ ମନ୍ତ୍ରିର କାର୍ଯ୍ୟ । କିନ୍ତୁ ଯାହା କରିବା ଅସୁନ୍ଦର ଓ ଅନୁଚିତ, ତାହା କରି ରାଜାଙ୍କୁ ପରିତୁଷ୍ଟ କରିବା ମହାଦୋଷ । ବୈଦ୍ୟ ଯେଉଁ ରାଜାର ମନୋରଞ୍ଜନ ନିମିତ୍ତ, ରୋଗ ହୋଇଥିବାବେଳେ, ତାହାର କୁପଥ୍ୟ-ସେବନ-ଇଚ୍ଛା ସମର୍ଥନ କରେ, ସେହି ରାଜାର ଶରୀର ଅଚିରେ ବିନଷ୍ଟ ହୁଏ । ଗୁରୁ ସର୍ବଦା ପ୍ରିୟକଥା କହି ଯେଉଁ ରାଜାର ସନ୍ତୋଷ ବିଧାନ ଚେଷ୍ଟା କରେ, ସେହି ରାଜାର ଧର୍ମ ଯେ ସମୂଳେ ଭ୍ରଷ୍ଟ ହେବ, ସେଥିରେ ତିଳେ ମାତ୍ର ସଂଶୟ ନାହିଁ । ଶୁଣନ୍ତୁ ମହାରାଜ, ପୁଣ୍ୟବଳରେ ଯେଉଁ ଧନଲାଭ ହୁଏ, ତାହା ବିନା ପୁଣ୍ୟରେ କଦାପି ହାତକୁ ଆସେ ନାହିଁ । ଥରେ ଜଣେ ନାପିତ ଧନ-ଲୋଭରେ ଜଣେ ଭିକ୍ଷୁକର ପ୍ରାଣ ସଂହାର କରି ଶେଷରେ ନିଜ ଜୀବନ ହରାଇଥିଲା ।'

ରାଜହଂସ ପଚାରିଲା—କିପରି ?

ଚକ୍ରବାକ କହିଲା—

---

## ନାପିତ ଓ ଭିକ୍ଷୁକ

ଅଯୋଧ୍ୟାରେ ଜଣେ ନାପିତ ଥିଲା—ତାହାର ନାମ ଚୂଡ଼ାମଣି । ସେ ଧନକାମନାରେ ବହୁକାଳ କାୟକ୍ଲେଶ ସ୍ୱୀକାର କରି ମହାଦେବଙ୍କର ଆରାଧନା କଲା । ତଦ୍ଦ୍ୱାରା ତାହାର ସମସ୍ତ ଦୁରଦୃଷ୍ଟ ଦୂର ହୋଇଗଲା । ଦିନେ ଯକ୍ଷେଶ୍ୱର କୁବେର ତାହାଙ୍କୁ ସ୍ୱପ୍ନରେ

---

ଅଜାତ, ଜନମି ମୃତ, ଆଉ ମୂର୍ଖ ସୁତ;

କହିଲେ—'ତୁ କାଲି ସକାଳେ କ୍ଷୌର କାର୍ଯ୍ୟ ସାରି ହାତରେ ବାଡ଼ ଖଣ୍ଡିଏ ଧରି ତୋ ଘରର ଦ୍ୱାର ପାଖରେ ଲୁଚି ରହିବୁ । ସେତେବେଳେ ତୋ'ର ଗୃହପ୍ରାଙ୍ଗଣକୁ ଜଣେ ଭିକ୍ଷୁକ ଆସିବ । ଦେଖିବା ମାତ୍ରେ ତାହାକୁ ଯଷ୍ଟିଦ୍ୱାରା ନିର୍ଦ୍ଦୟଭାବରେ ପ୍ରହାର କରି ବଧ କରିବୁ । ସେହି ଭିକ୍ଷୁକ ସେହିକ୍ଷଣି ଗୋଟିଏ ସୁବର୍ଣ୍ଣ-ପୂର୍ଣ୍ଣ ପାତ୍ର ହୋଇଯିବ । ତୁ ତାହା ପାଇ ଯାବଜ୍ଜୀବନ ସୁଖରେ ରହି ପାରିବୁ ।'

ପରଦିନ ପ୍ରଭାତରେ ଚୂଡ଼ାମଣି କୁବେରଙ୍କ ଆଦେଶ ଅନୁସାରେ କାର୍ଯ୍ୟ କରି ଧନ ଲାଭ କଲା । ଅନ୍ୟ ଜଣେ ନାପିତ ଚୂଡ଼ାମଣିର ଏହି କାର୍ଯ୍ୟ ଦେଖି ଚିନ୍ତା କଲା, 'ଏ ତ ଧନଲାଭର ଉତ୍ତମ ଉପାୟ ! ତେବେ ମୁଁ କାହିଁକି ଏହି ସୁଯୋଗ ଛାଡ଼ିବି ?' ସେହିଦିନଠାରୁ ସେ ନାପିତ ପ୍ରତ୍ୟହ ଲଗୁଡ଼ ଖଣ୍ଡିଏ ଧରି ଭିକ୍ଷୁକର ଆଗମନ ପ୍ରତୀକ୍ଷା କରି ରହୁଥାଏ । ଦିନେ ସେ ଜଣେ ଭିକ୍ଷୁକକୁ ନିଜ ଘରକୁ ଆସିବାର ଦେଖି ଯଷ୍ଟିଦ୍ୱାରା ତାହାର ପ୍ରାଣ ନଷ୍ଟକଲା । ଫଳତଃ ସେ ରାଜପୁରୁଷ-ମାନଙ୍କ ହାତରେ ପ୍ରାଣଦଣ୍ଡ ପାଇଲା ।

ଏହି କାରଣରୁହିଁ ମୁଁ କହୁଥିଲି ଯେ, ଜଣେ ପୁଣ୍ୟବଳରେ ଯେଉଁ ଧନ ଲାଭ କରେ, ଅନ୍ୟ କେହି ବିନା-ପୁଣ୍ୟରେ ତାହା ପ୍ରାପ୍ତ ହୋଇ ନ ପାରେ ।

ରାଜହଂସ କହିଲା—'ଆଗନ୍ତୁକ ମିତ୍ର କିମ୍ବା ଶତ୍ରୁ, ତାହା ପୂର୍ବବୃତ୍ତ ଜାଣିବାରେ କିପରି ନିର୍ଣ୍ଣୟ କରାଯାଇପାରିବ ? ଯାଉ, ଛାଡ଼ ସେ କଥା । ବର୍ତ୍ତମାନ ଉପସ୍ଥିତ ବିଷୟରେ କର୍ତ୍ତବ୍ୟ ସ୍ଥିର କର ।

---

ଏ ତିନିଙ୍କ ମଧ୍ୟେ ଭଲ ମୃତ ବା ଅଜାତ ।

ରାଜା ଶବବର୍ଣ୍ଣ ମଳୟ ପର୍ବତର ଅଧିତ୍ୟକାରେ ସୈନ୍ୟ ସହିତ ଅବସ୍ଥାନ କରୁଅଛି । ବର୍ତ୍ତମାନ କଣ କରିବା ଉଚିତ ?'

ଚକ୍ରବାକ କହିଲା—'ମହାରାଜ, ସେହି ମନ୍ତ୍ରି-ଶ୍ରେଷ୍ଠ ଗୃଧ୍ରର ଉପଦେଶ ପ୍ରତି ଶବବର୍ଣ୍ଣ ଅନାଦର ଦେଖାଉଥିବା ବିଷୟ ଆଗତ ଗୁପ୍ତଚର ମୁଖରୁ ଶୁଣିଲେ । ଅତଏବ ଏହି ମୂର୍ଖ ରାଜାକୁ ଜୟ କରିବା କଷ୍ଟକର ହେବ ନାହିଁ । କଥିତ ଅଛି—ଯେଉଁ ରାଜା ଅତିଶୟ ଲୋଭୀ, କ୍ରୂର, ଲୁବ୍ଧ, ଅସ୍ଥିର, ଅଳସ, ଅବୋଧ, ପ୍ରମତ୍ତ ଓ ଅସତ୍ୟପରାୟଣ ଏବଂ ଯେ ଆପଣାର ସୈନ୍ୟ ପ୍ରତି ଅବଜ୍ଞା ପ୍ରକାଶ କରେ, ସେ ଅତି ସହଜରେ ଶତ୍ରୁଦ୍ୱାରା ବିନଷ୍ଟ ହୁଏ । ଅତଏବ ଶବବର୍ଣ୍ଣ ଆସି ଆମ୍ଭ ଦୁର୍ଗ ଅବରୋଧ କରିବା ପୂର୍ବରୁ ତାହାର ସୈନିକମାନଙ୍କୁ ନଷ୍ଟ କରିବା ସକାଶେ ଆମ୍ଭ ସେନାପତି ସାରସ ପ୍ରଭୃତିଙ୍କୁ ଗିରି, ନଦୀ, ଓ ବନପଥକୁ ପ୍ରେରଣ କରନ୍ତୁ । ଯେତେବେଳେ ଶତ୍ରୁ ସୈନ୍ୟଙ୍କୁ ଦୀର୍ଘ ପଥ ପର୍ଯ୍ୟଟନରେ ଅତିଶୟ ବାଧାପ୍ରାପ୍ତ, ଗିରି, ନଦୀ, ବନ ଇତ୍ୟାଦି ଦୁର୍ଗମ ସ୍ଥାନରେ ପତିତ, ଭୀଷଣ ଅଗ୍ନିଭୟରେ ନିତାନ୍ତ ଭୀତ, କ୍ଷୁଧା, ତୃଷ୍ଣା ଓ ପରିଶ୍ରମରେ ଅତିଶୟ କ୍ଳାନ୍ତ, ଦାରୁଣ ଦୁର୍ଭିକ୍ଷଦ୍ୱାରା ଅତ୍ୟନ୍ତ ପୀଡ଼ିତ, ଝଡ଼ବର୍ଷାରେ ଅତିଶୟ ଆକୁଳିତ, ପ୍ରବଳ ଦସ୍ୟୁଭୟରେ ନିତାନ୍ତ ବ୍ୟାକୁଳିତ ଏବଂ ଭୋଜନରେ ରତ, ପ୍ରମତ୍ତ ଓ ରୋଗଗ୍ରସ୍ତ ଥିବାର ଦେଖିବ, ସେତେବେଳେ ସେମାନଙ୍କୁ ନଷ୍ଟ କରିବା ଉଚିତ । ପଙ୍କ ଧୂଳି ଓ ଜଳରେ ଆଚ୍ଛାଦିତ, ବିଶୃଙ୍ଖଳ ଓ ବିପର୍ଯ୍ୟସ୍ତ ଭାବରେ ଚତୁର୍ଦ୍ଦିଗରେ ପଳାୟିତ, ବିରଳସଂଖ୍ୟକ, ନିରାଶ୍ରୟ ଓ ଭଗ୍ନବଳ ସୈନ୍ୟ ଅନାୟାସରେ ବିନଷ୍ଟ ହୋଇଥାନ୍ତି । ଶତ୍ରୁରାଜ୍ୟର ସୈନିକଗଣ ରାତିବେଳେ ଆକ୍ରମଣ ଭୟରେ ଜାଗରିତ ଏବଂ ଅତିଶୟ ପରିଶ୍ରାନ୍ତ

---

ଅଜାତେ ବା ମୃତେ ଦୁଃଖେ ଏକଥର ମାସଃ

ହୋଇ ଦିବାଭାଗରେ ନିକ୍ଷିପ୍ତ ଥିବାବେଳେ ସେମାନଙ୍କୁ ଆକ୍ରମଣ କରିବା ଶ୍ରେୟସ୍କର । ଅତଏବ ସାରସ ପ୍ରଭୃତି ସେନାପତିଗଣ ଶୀଘ୍ର ଯାଇ ସେହି ପ୍ରମତ୍ତ ରାଜାର ସୈନିକମାନଙ୍କୁ ସୁଯୋଗକ୍ରମେ ଦିବାରାତ୍ରି ବିନଷ୍ଟ କରନ୍ତୁ ।’

ଅନନ୍ତର ମନ୍ତ୍ରୀ ଚକ୍ରବାକର ଉପରୋକ୍ତ ମନ୍ତ୍ରଣା କାର୍ଯ୍ୟରେ ପରିଣତ କରାଗଲା । ଫଳରେ ଚିତ୍ରବର୍ଣ୍ଣର ବିସ୍ତର ସୈନ୍ୟ ଓ ସେନାପତି ନିହତ ହେଲେ । ଚିତ୍ରବର୍ଣ୍ଣ ଅତ୍ୟନ୍ତ ବିଷର୍ଣ୍ଣ ହୋଇ ଦୂରଦର୍ଶୀ ନାମକ ଗୃଧ୍ର ମନ୍ତ୍ରୀଙ୍କୁ କହିଲା—‘ମହାଶୟ, ମୋ ପ୍ରତି ଆପଣ କି ହେତୁ ଉପେକ୍ଷା ଦେଖାଉଅଛନ୍ତି ? କୌଣସି ବିଷୟରେ ମୁଁ ତ୍ରୁଟି କରିଅଛି କି ? କଥିତ ଅଛି ଯେ, ଅବିନୟଯୋଗୁଁ ରାଜା ଲକ୍ଷ୍ମୀ-ଚ୍ୟୁତ ହୁଏ । ବୃଦ୍ଧାବସ୍ଥା ଯେପରି ଶରୀରର ବଳ, ବୀର୍ଯ୍ୟ; ସୌନ୍ଦର୍ଯ୍ୟ ସମସ୍ତ ନଷ୍ଟ କରେ, ଅବିନୟ ସେପରି ରାଜାର ରାଜ୍ୟ ବିନଷ୍ଟ କରିଥାଏ । ସୁଦକ୍ଷ ବ୍ୟକ୍ତି ଅଖଣ୍ଡ ସୌଭାଗ୍ୟ ଲାଭ କରେ, ପଥ୍ୟସେବୀ ସର୍ବଦା ସୁସ୍ଥ ସବଳ ରହେ, ସୁସ୍ଥ ବ୍ୟକ୍ତି ଅପାର ସୁଖ ପ୍ରାପ୍ତ ହୁଏ, ଉଦ୍‌ଯୋଗୀ ଲୋକ ବିଦ୍ୟାର ଶେଷସୀମାରେ ଉପନୀତ ହୁଏ ଏବଂ ଯେ ଅତିଶୟ ବିନୟୀ, ସେ ଚିରକାଳ ଧର୍ମ ଅର୍ଥ ଓ ଯଶର ଅଧିକାରୀ ହୁଏ ।’

ଗୃଧ୍ର କହିଲା—‘ଶୁଣନ୍ତୁ ମହାରାଜ !, ସୁପ୍ରଶସ୍ତ ଜଳାଶୟ ନିକଟରେ ଥିବା ବୃକ୍ଷ ଯେପରି (ସେହି ରସ ଆକର୍ଷଣ କରି) ଅତିଶୟ ବୃଦ୍ଧି ପ୍ରାପ୍ତ ହୁଏ, ସେପରି ବିଦ୍ୟାବିହୀନ ରାଜା ମଧ୍ୟ ସୁବିଜ୍ଞ ବୃଦ୍ଧର ଆଶ୍ରୟ ପାଇ (ତାହାର ସଦୁପଦେଶ ବଳରେ) ନିରତିଶୟ ଉନ୍ନତି

---

ପଦେ ପଦେ ଦହେ ପୂହ ହୋଇଲେ ଅପାହ ।

ଲଭ କରେ । ପୁଣି, ଯେଉଁ ରାଜା ସର୍ବଦା ସ୍ତ୍ରୀ ପ୍ରତି ଅତ୍ୟନ୍ତ ଆସକ୍ତ ରହେ, ଦ୍ୟୂତକ୍ରୀଡ଼ା, ବାରୁଣିପାନ, ମୃଗୟା, ଭ୍ରମଣ, ଅର୍ଥ-ଦୂଷଣ ଓ ପରନିନ୍ଦା କରି ନିଜ କର୍ତ୍ତବ୍ୟ-ପଥରୁ ସ୍ଖଳିତ ହୁଏ, ଯେ ବିନାପରାଧରେ ବା ସାମାନ୍ୟ ଦୋଷ ଦେଖି ନିଦାରୁଣ ଦଣ୍ଡ ବିଧାନ କରେ ଏବଂ ଯେ ପ୍ରଜାମାନଙ୍କ ପ୍ରତି କଠୋର ବାକ୍ୟ ପ୍ରୟୋଗ କରେ, ସେହି ରାଜାଙ୍କୁ ବ୍ୟସନୀ କୁହାଯାଏ । ଯେ ଭଲ ମନ୍ଦ ବିଚାର ନ କରି ସହସା ସାହସ ପ୍ରକାଶ କରେ ଅଥବା କାର୍ଯ୍ୟ ବେଳେ ସଦୁପାୟ ସ୍ଥିର କରିବାକୁ ଏକାନ୍ତ ଅସମର୍ଥ ହୁଏ, ସେ କଦାପି ସମ୍ପଦ ଲଭ କରି ନ ପାରେ । କାରଣ, କେବଳ ସୁନୀତି କିମ୍ବା ସାହସବଳରେ ସମ୍ପଦ ମିଳେ ନାହିଁ । ସୁନୀତି ସହିତ ବୀରତ୍ୱ ପ୍ରଦର୍ଶନହିଁ ସମ୍ପଦଲଭର ସହଜ ପନ୍ଥା ।'

'ଆପଣ ନିଜ ସୈନ୍ୟର ଉତ୍ସାହ ଦେଖି ଏହି ଯୁଦ୍ଧରେ ପ୍ରବୃତ୍ତ ହୋଇଅଛନ୍ତି । ମୁଁ ଅନେକ ଥର ସୁମନ୍ତ୍ରଣା ଦେଲେ ସୁଦ୍ଧା ତାହା ଆପଣ କଟୂବାକ୍ୟରେ ପ୍ରତ୍ୟାଖ୍ୟାନ କଲେ । ସେହି ଦୁର୍ମତିର ଫଳରେହିଁ ଆପଣ ଏବେ ଏହି କଷ୍ଟ ଭୋଗ କରୁଅଛନ୍ତି । ଶାସ୍ତ୍ରରେ ଲେଖାଅଛି—କୁମନ୍ତ୍ରିର କୁମନ୍ତ୍ରଣା ଶୁଣିଲେ ରାଜାର ଦୁର୍ମତି-ଦୋଷ ଘଟିଥାଏ । ସର୍ବଦା କୁପଥ୍ୟ ସେବନ କରି କେହି କେବେ ରୋଗର ଯାତନାରୁ ନିଷ୍କୃତି ପାଇବାର ଶୁଣିଅଛନ୍ତି ? କାହାର ମନ ଧନ-ମଦରେ ମତ୍ତ ନ ହୁଏ ? ଦୁରନ୍ତ କୃତାନ୍ତ ହସ୍ତରୁ କିଏ ଅବା ମୁକ୍ତ ହେବାକୁ ସମର୍ଥ ?'

'ରମଣୀର ପ୍ରଲୋଭନେ ହୋଇଣ ପତିତ,
ନ ହୁଅଇ ଅବଶେଷେ କେ ବା ସନ୍ତାପିତ ?'

---

ଭୂଦାନ, ଗୋଦାନ, ଅନ୍ନଦାନ, ସ୍ୱର୍ଣ୍ଣଦାନ;

ପୁଣି ବିଷାଦ ଆନନ୍ଦ ହରି ନିଏ । ଶୀତ ଋତୁ ଶରତର ଶୋଭା ନଷ୍ଟ କରେ । ସୂର୍ଯ୍ୟ ଅନ୍ଧକାର ଦୂର କରେ । କୃତଘ୍ନତା ସକଳ ସୁକୃତ ଭ୍ରଷ୍ଟ କରିଥାଏ । ବାଞ୍ଛିତ ବିଷୟଲାଭରେ ସମସ୍ତ ଦୁଃଖ ତାପ ନିରାକୃତ ହୁଏ । ସୁନୀତିପ୍ରୟୋଗରେ ବିପଦ-ଭୟ ବିଦୂରିତ ହୁଏ ଏବଂ ମନୁଷ୍ୟ ବିପୁଳ ବିଭବର ଅଧିକାରୀ ହେଲେହେଁ ଆପଣାର ଦୁର୍ନୀତି-ଦୋଷ ଯୋଗୁଁ ସେ ସବୁ ହରାଇ ବସେ । ମୁଁ ଭାବିଲି, ଆପଣ ଅତ୍ୟନ୍ତ ନିର୍ବୋଧ, ଯେହେତୁ ସେତେବେଳେ ଆପଣ କ୍ରୋଧ ଓ ଲୋଭର ବଶୀଭୂତ ହୋଇ ମୋର ସତ୍‌ପରାମର୍ଶ ଗ୍ରହଣ କଲେନାହିଁ । ଉଲ୍‌କାପାତ ଯେପରି ସ୍ନିଗ୍ଧ ସୁନିର୍ମଳ ଚନ୍ଦ୍ରାଲୋକକୁ ସମାଚ୍ଛନ୍ନ କରି ଦିଏ, ଆପଣଙ୍କ କୋପପୂର୍ଣ୍ଣ ବାକ୍ୟସବୁ ମଧ୍ୟ ସେପରି ମୋର ନୀତି-ଶାସ୍ତ୍ର-ସଙ୍ଗତ ମନ୍ତ୍ରଣାକୁ ଏକାବେଳକେ ଆଚ୍ଛନ୍ନ କରିପକାଇଲା । ବୁଦ୍ଧିହୀନ ଲୋକକୁ ଉପଦେଶ ଦେଲେ କି ଫଳ ହେବ ? ଚକ୍ଷୁଶୂନ୍ୟ ଲୋକ ଦର୍ପଣର ଉପଯୋଗିତା ବା କଣ ବୁଝି ପାରିବ ? ଆପଣ ମୋ ଉପଦେଶ ପ୍ରତି ଉପେକ୍ଷା ଦେଖାଇବାରୁ ମୁଁ ଉଦାସୀନ ରହିଲି ।'

ତାହା ଶୁଣି ରାଜା ଚିତ୍ରବର୍ଣ୍ଣ ହାତ ଯୋଡ଼ି କହିଲା—'ମହାଶୟ ମୁଁ ଗୁରୁତର ଅପରାଧ କରିଅଛି; କ୍ଷମା କରନ୍ତୁ । ବର୍ତ୍ତମାନ ହତାବଶିଷ୍ଟ ସୈନ୍ୟ ସାମନ୍ତ ଧରି ଯେପରି ମୁଁ ନିରାପଦରେ ବିନ୍ଧ୍ୟାଚଳକୁ ଫେରି ଯାଇ ପାରିବି, ତହିଁର ଉପାୟ କରନ୍ତୁ ।' ଗୃଧ୍ର ଭାବିଲା—'ଏବେ ଅବଶ୍ୟ ଏଥିର ପ୍ରତିକାର କରିବାକୁ ହେବ । କାରଣ ରାଜା, ବ୍ରାହ୍ମଣ, ଗୋଜାତି, ଦେବତା, ଗୁରୁ, ବାଳକ, ଆତୁରବ୍ୟକ୍ତି ଓ ବୃଦ୍ଧ ଏମାନଙ୍କ ପ୍ରତି କ୍ରୋଧ ଜାତ ହେଲେ ସୁଦ୍ଧା ତାହା ସନ୍ଦହକାରେ ଦମନ କରିବା ଉଚିତ ।'

---

ଅଭୟ ଦାନର କେବେ ନ ହୁଏ ସମାନ ।

ପରେ ସେ ସହାସ୍ୟମୁଖରେ କହିଲ—'ମହାରାଜ, ଭୟ କରନ୍ତୁ ନାହିଁ । ଧୈର୍ଯ୍ୟ ଧରନ୍ତୁ । ସଙ୍କଟ ସମୟରେ ମନ୍ତ୍ରୀର ଚତୁରତା ସ୍ପଷ୍ଟ ବୁଝାଯାଏ । ସନ୍ନିପାତ ବିକାରରେ ବୈଦ୍ୟର ପ୍ରକୃତ ପରିଚୟ ମିଳେ । ଅତଏବ କାର୍ଯ୍ୟବେଳେହିଁ ମନୁଷ୍ୟର ବୁଦ୍ଧି ଶିକ୍ଷା ପଡ଼େ; କିନ୍ତୁ ଅନ୍ୟ ସମୟରେ ନୁହେଁ । କାରଣ କୌଣସି ଆବଶ୍ୟକତା ନ ଥିବାବେଳେ ସମସ୍ତେ ନିଜ ନିଜକୁ ବୁଦ୍ଧିମାନ୍ ବୋଲି ପରିଚୟ ଦେଇପାରନ୍ତି । ପୁଣି ଅଜ୍ଞ ଲୋକ ଅତି ସାମାନ୍ୟ କାର୍ଯ୍ୟ ଆରମ୍ଭ କରି ସୁଦ୍ଧା ଅତିରିକ୍ତ ବ୍ୟସ୍ତବ୍ୟସ୍ତ ହୋଇପଡ଼େ; କିନ୍ତୁ କାର୍ଯ୍ୟ ଯେତେ ଗୁରୁତର ହେଉ ପଛକେ ବୁଦ୍ଧିମାନ୍ ଲୋକ ତାହା ଅତି ଧୀରସ୍ଥିର ଭାବରେ ସମ୍ପନ୍ନ କରିଥାଏ । ମହାରାଜ, ଶ୍ରାନ୍ତ ହୁଅନ୍ତୁ ନାହିଁ । ଆପଣଙ୍କ ପ୍ରତାପରେହିଁ ମୁଁ ଶତ୍ରୁ ଦୁର୍ଗ ଭଗ୍ନ କରିବି ଏବଂ ଅକ୍ଷୟକୀର୍ତ୍ତି ଓ ଅସୀମ ପରାକ୍ରମସହକାରେ ଆପଣଙ୍କୁ ଅଚିରାତ୍ ସସୈନ୍ୟ ବିନ୍ଧ୍ୟାଚଳରେ ନେଇ ଥୁଇ ଦେବି ।'

ଚିତ୍ରବର୍ଣ୍ଣ କହିଲ—'ବର୍ତ୍ତମାନ ଏହି ଅଳ୍ପସଂଖ୍ୟକ ସୈନ୍ୟ ସାହାଯ୍ୟରେ ଏହି କାର୍ଯ୍ୟ ସମ୍ପନ୍ନ ହୋଇପାରିବ ତ ?' ଗୃଧ୍ର କହିଲ —'ମହାରାଜ, ସକଳ ବିଷୟ ସୁଚାରୁରୂପେ ସମ୍ପନ୍ନ ହେବ, ସନ୍ଦେହ ନାହିଁ । କାରଣ, କର୍ମିଷ୍ଠପ୍ରିୟତା ଜୟଲାଭର ସ୍ପଷ୍ଟ ସୂଚନା; ଅତଏବ ଜିଗୀଷୁ ରାଜାର ଅଣୁମାତ୍ର ଦୀର୍ଘସୂତ୍ରତା ଦେଖା ନ ଗଲେ ତାହା ପକ୍ଷରେ ବିଜୟଲାଭ ଯେ ଅବଶ୍ୟମ୍ଭାବୀ, ଏହା କହିବା ବାହୁଲ୍ୟ ମାତ୍ର । ଆଜି ଶତ୍ରୁର ଦୁର୍ଗ ହଠାତ୍ ଆକ୍ରମଣ କରନ୍ତୁ ।'

ପରେ ସେହି ଗୁପ୍ତଚର ବକ ରାଜା ହିରଣ୍ୟଗର୍ଭ ନିକଟକୁ ଯାଇ ଜଣାଇଲ—'ମହାରାଜ, ବିପଦ ଉପସ୍ଥିତ ! ଚିତ୍ରବର୍ଣ୍ଣ ଗୃଧ୍ର

---

ଏକ ଏକ କରି ଦିନ ଯାଉଅଛି ଯେତେ;

ମନ୍ତ୍ରୀର ଉପଦେଶ ପ୍ରକାରେ ଅବଶିଷ୍ଟ ସୈନ୍ୟ ସାହାଯ୍ୟରେ, ଅଜ ଆମ୍ଭ ଦୁର୍ଗ ଅବରୋଧ କରିବ ।' ହିରଣ୍ୟଗର୍ଭ ବିଷୁସ୍ମ ଓ ଉଦ୍‌ବିଗ୍ନରେ ଅଧୀର ହୋଇଗଲା । ସେ ସେହିକ୍ଷଣି ଚକ୍ରବାକର ପରାମର୍ଶ ଲୋଡ଼ିଲା ।

ଚକ୍ରବାକ କହିଲା—'ମହାରାଜ, ନିଜ ସୈନିକମାନଙ୍କର ଗୁଣାଗୁଣ ବିବେଚନା କରି ସେମାନଙ୍କୁ ଯଥାଯୋଗ୍ୟ ସୁବର୍ଣ୍ଣ ବସ୍ତ୍ରାଦି ରାଜପ୍ରସାଦ ଦିଅନ୍ତୁ । କଥିତ ଅଛି—ଯେ ଏକ କଉଡ଼ା ସୁଦ୍ଧା ଅପବ୍ୟୟ କରେ ନାହିଁ ଅଥଚ କର୍ତ୍ତବ୍ୟ ସାଧନ ବେଳେ ଆବଶ୍ୟକ ହେଲେ କୋଟି କୋଟି ସ୍ୱର୍ଣ୍ଣମୁଦ୍ରା ଅକାତରଭାବରେ ବ୍ୟୟ କରେ, ସେହି କର୍ତ୍ତବ୍ୟପରାୟଣ ରାଜାକୁ ଲକ୍ଷ୍ମୀ କେବେ ଛାଡ଼ି ଯା'ନ୍ତି ନାହିଁ । ପୁଣି, ଦରିଦ୍ରବନ୍ଧୁର ହିତ-ସାଧନ, ବିପକ୍ଷର କ୍ଷୟ, ବିପଦରୁ ଉଦ୍ଧାର, ପ୍ରିୟାର ସନ୍ତୋଷବିଧାନ, ଯଶୋଲାଭ, ଯଜ୍ଞ, ଶରଣସ୍ଥ ଓ ମିତ୍ରଲାଭ—ଏହି ସମସ୍ତ ବିଷୟରେ ଅତିରିକ୍ତ ବ୍ୟୟ କୌଣସି ମତେ ଦୋଷାବହ ନୁହେଁ । ମୂର୍ଖ ଅତ୍ୟଳ୍ପ ବ୍ୟୟ ଉପରେ ଆପଣାର ସର୍ବନାଶ କରିଥାଏ । କୌଣସି ବୁଦ୍ଧିମାନ୍ ବଣିକକୁ ଶୁଳ୍କ ଉପରେ ଆପଣାର ମୂଳଧନ ମଧ୍ୟ ବାଣିଜ୍ୟ ବନ୍ଦ କରିବାର କେବେ ଦେଖିଅଛନ୍ତି ?'

ରାଜହଂସ କହିଲା—'ଏହି ଅବସ୍ଥାରେ ଅତିରିକ୍ତ ଅର୍ଥ ବ୍ୟୟ କରାଯିବା ଉଚିତ କି ? ଶାସ୍ତ୍ରରେ ଲେଖା ଅଛି—ବିପଦ ନିମନ୍ତେ ଧନ ସଞ୍ଚୟ କରିବା ବିଧେୟ ।'

ଚକ୍ରବାକ କହିଲା—'ଆପଣଙ୍କ ପରି ସୌଭାଗ୍ୟବାନ୍ ରାଜା ପକ୍ଷରେ ବିପଦ ଏକାନ୍ତ ଅସମ୍ଭବ ।'

---

ନିକଟେ ମରଣକାଳ ଆସୁଅଛି ଚେତେ ।

ରାଜା—ଲକ୍ଷ୍ମୀ ତ ଫେରେ ପ୍ରତିକୂଳ ହୋଇ ପାରନ୍ତି ।

ମନ୍ତ୍ରୀ—ମହାରାଜ, ଲକ୍ଷ୍ମୀ ପ୍ରତିକୂଳ ହେଲେ ସଞ୍ଚିତ ଧନ ନଷ୍ଟ ହେବ । ଅତଏବ କୃପଣତା ଛାଡ଼ି ସୈନିକମାନଙ୍କୁ ଯଥେଷ୍ଟ ଧନ ଓ ସମ୍ମାନ ଦିଅନ୍ତୁ । ତଦ୍ଦ୍ୱାରା ସେମାନେ ଅତ୍ୟନ୍ତ ଉତ୍ସାହିତ ହେବେ । କଥିତ ଅଛି, ଯେଉଁ ସୈନିକଗଣ ଉଚ୍ଚ ବଂଶରେ ଜାତ, ଦାନ ଓ ମାନରେ ଆନନ୍ଦିତ ଓ ସମ୍ମାନିତ, ଅଭେଦ୍ୟ ଏକତା-ସୂତ୍ରରେ ଆବଦ୍ଧ, ପ୍ରଭୁ-କାର୍ଯ୍ୟରେ ଦୃଢ଼ସଙ୍କଳ୍ପ ଏବଂ ମୃତ୍ୟୁ ଶଙ୍କା ବିରହିତ, ସେମାନେ ଶତ୍ରୁପକ୍ଷକୁ ଅନାୟାସରେ ପରାଜିତ କରି ପାରିବେ । ସୁଶିକ୍ଷିତ, ସଚ୍ଚରିତ୍ର, କାର୍ଯ୍ୟରେ ଦୃଢ଼ବ୍ରତ, ଯୁଦ୍ଧନିପୁଣ, ଏକତା-ବନ୍ଧନରେ ସତତ ମିଳିତ—ଏପରି ପଞ୍ଚଶତ ସୈନିକ ବହୁସଂଖ୍ୟକ ବିପକ୍ଷସେନାକୁ ମଧ୍ୟ ପରାସ୍ତ କରି ପାରନ୍ତି । ଆତ୍ମଶ୍ଳାଘୀ, କୃତଘ୍ନ, ନିଷ୍ଠୁର, ଦୁରାଶୟ ଓ ହିତାହିତଜ୍ଞାନଶୂନ୍ୟ ଲୋକକୁ ପରମ ସାଧୁପୁରୁଷ ସୁଦ୍ଧା ପରିହାର କରିଥାଏ । ସେପରି ଲୋକକୁ ଅନ୍ୟ ସମସ୍ତେ ଯେ ତ୍ୟାଗ କରିବେ, ସେଥିରେ ଆଶ୍ଚର୍ଯ୍ୟ ବା କ'ଣ ? ସତ୍ୟନିଷ୍ଠା, ଶୂରତା ଓ ସୁପାତ୍ରରେ ଦାନ—ରାଜାର ଏହି ତିନିଗୁଣ ପ୍ରଧାନ । ଯେଉଁ ରାଜାର ଏହି ତିନିଗୁଣ ନ ଥାଏ, ସେ ସର୍ବତ୍ର ଘୃଣିତ ହୁଏ ସିନା ! ମନ୍ତ୍ରୀମାନଙ୍କୁ ବିଶେଷଭାବରେ ପୁରସ୍କୃତ କରିବା ରାଜାର ଧର୍ମ । କଥିତ ଅଛି, ରାଜାର ଅତ୍ୟନ୍ତ ବିଶ୍ୱସ୍ତ ଲୋକ ସେ, ଯେ ରାଜାର ସୌଭାଗ୍ୟରେ ଭାଗ୍ୟବାନ୍ ଏବଂ ବ୍ୟସନରେ ବ୍ୟସନୀ ହୋଇଥାଏ । ଅତଏବ ସେପରି ଭାଗ୍ୟ-ସୂତ୍ରରେ ଆବଦ୍ଧ ଲୋକଙ୍କୁହିଁ ପ୍ରାଣ-ରକ୍ଷା ଓ ଧନ-ରକ୍ଷା କାର୍ଯ୍ୟରେ ନିୟୋଜିତ କରିବା ରାଜାର କର୍ତ୍ତବ୍ୟ ।

---

ଲୁବ୍‌ଧ କ୍ଷୁଦ୍ର ଲୋକମାନେ ଜାଣିବ ନଷ୍ଟସ୍ୱ;

'ଯେଉଁମାନେ ପ୍ରଭୁର ସମ୍ପତ୍ତିରେ ନିଜ ନିଜକୁ ସମ୍ପତ୍ତିଶାଳୀ ବୋଲି ମନେ କରନ୍ତି ଏବଂ ପ୍ରଭୁର ବିପଦରେ ନିଜ ନିଜକୁ ଆପଦଗ୍ରସ୍ତ ଜ୍ଞାନ କରନ୍ତି, ସେଭଳି ପ୍ରଭୁଭକ୍ତ ବିଶ୍ୱସ୍ତ ମନ୍ତ୍ରୀମାନଙ୍କ ପ୍ରତି କୌଣସି ସମୟରେ ଅନାଦର ଦେଖାଇବା ମୋଟେଇ ରାଜାର କାର୍ଯ୍ୟ ନୁହେ । ରାଜା ଯେତେବେଳେ ଘୋର ମଦରେ ଅନ୍ଧ ହୋଇ ନାନାବିଧ ମନ୍ଦ କାର୍ଯ୍ୟରେ ଯୋଗ ଦିଏ, ସେତେବେଳେ ସୁବିଜ୍ଞ ମନ୍ତ୍ରୀହିଁ ତାହାର ସହାୟ ହୋଇଥାଏ; ଅନ୍ୟ କେହି ତାହାକୁ ଉଦ୍ଧାର କରେ ନାହିଁ । ଯେଉଁ ରାଜାର ମନ୍ତ୍ରୀ ବାଳକ, ସ୍ତ୍ରୀ କିମ୍ବା ଶଠ, ସେ ସର୍ବଦା ନ୍ୟାୟପଥରୁ ବିଚଳିତ ହୋଇ ଦୁର୍ଗତି ଭୋଗ କରେ । ଯେପରି ପ୍ରବଳ ଝଡ଼ ବେଳେ ସାଗର ମଧ୍ୟରେ ଥିବା ନୌକ ନିସ୍ତାର ପାଏ ନାହିଁ, ସେପରି କୁମନ୍ତ୍ରୀର ମନ୍ତ୍ରଣାରେ ବିଚାରହୀନ ରାଜା ପାପରେ ପଡ଼ି ଆଉ ମୁକ୍ତିଲାଭ କରିପାରେ ନାହିଁ । ଯେଉଁ ରାଜା ହର୍ଷ କିମ୍ବା ଶୋକରେ ସୁସଂଯତ ରହେ, ଅଣୁମାତ୍ର ଅପବ୍ୟୟ କରେ ନାହିଁ, ସର୍ବଦା ଶାସ୍ତ୍ରର ବିଧାନ ଅନୁସାରେ ଚଳେ ଏବଂ ଭୃତ୍ୟମାନଙ୍କ ପ୍ରତି ସଦ୍‌ଭାବ ପ୍ରକାଶ କରେ, ବସୁମତୀ ତାହାକୁ ଯାବଜ୍ଜୀବନ ଧନ, ରତ୍ନ, ଶସ୍ୟ ପ୍ରଭୃତି ସମ୍ପଦ ଦାନ କରିଥାଏ ।'

ଅନନ୍ତର ମେଘବର୍ଣ୍ଣ ଆସି ହିରଣ୍ୟଗର୍ଭକୁ ପ୍ରଣାମ କରି କହିଲା —'ମହାରାଜ, ଯୁଦ୍ଧାର୍ଥୀ ଶତ୍ରୁ ବର୍ତ୍ତମାନ ଦୁର୍ଗ-ଦ୍ୱାରରେ । ଆଦେଶ ହେଲେ ଏହିକ୍ଷଣି ଯାଇ ନିଜ ପରାକ୍ରମ ଦେଖାଇବି ଏବଂ ତଦ୍ଦ୍ୱାରା ଆପଣଙ୍କ ଅନୁଗ୍ରହ ଋଣରୁ ମୁକ୍ତହେବି । ଥରେ କୃପା ଦୃଷ୍ଟି ପକାନ୍ତୁ ।' ଚକ୍ରବାକ କହିଲା—'ନା ସେପରି କର ନାହିଁ । ଦୁର୍ଗ ବାହାରେ ଯାଇଁ ଯୁଦ୍ଧ କଲେ ଦୁର୍ଗରକ୍ଷା-ଚେଷ୍ଟା ନିଷ୍ଫଳ ହେବ । ଦେଖ, ଜଳରୁ

ବାହାର ହେଲେ ଭୀଷଣ ଦୁର୍ଦ୍ଧର୍ଷ କୁମ୍ଭୀର ମଧ୍ୟ ଆପଣାର ବଳ ହରାଇଥାଏ । ସିଂହ ବନତ୍ୟାଗ କରି ସାମାନ୍ୟ ଶୃଗାଳତୁଲ୍ୟ ହୀନବଳ ହୋଇ ପଡ଼େ । ଅତଏବ ଦୁର୍ଗ ମଧ୍ୟରେ ରହି ଯୁଦ୍ଧ କରିବା ଭଲ ।'

କାକ କହିଲା—'ମହାରାଜ, ସ୍ୱୟଂ ଯାଇ ଯୁଦ୍ଧ ଦେଖନ୍ତୁ । ରାଜାଙ୍କୁ ସମ୍ମୁଖରେ ନିଜ ସୈନ୍ୟ ରଖି ଯୁଦ୍ଧ କରିବାକୁ ହେବ । ପ୍ରଭୁ ନିକଟରେ ରହିଲେ ଉତ୍ସାହିତ ହୋଇ କୁକୁର ମଧ୍ୟ ସିଂହବିକ୍ରମ ପ୍ରକାଶ କରିଥାଏ ।'

ପରେ ସେମାନେ ସମସ୍ତେ ଦୁର୍ଗର ଦ୍ୱାରଦେଶରେ ଯାଇ ଘୋର ଯୁଦ୍ଧ ଆରମ୍ଭ କଲେ । ପରଦିନ ରାଜା ଚିତ୍ରବର୍ଣ୍ଣ ଗୃଧ୍ରକୁ କହିଲା—'ମହାଶୟ, ବର୍ତ୍ତମାନ ଆପଣଙ୍କ ପ୍ରତିଜ୍ଞା ପାଳନ କରନ୍ତୁ ।'

ଗୃଧ୍ର—ଶୁଣନ୍ତୁ ମହାରାଜ, ଯେଉଁ ଦୁର୍ଗ ସୁଦୃଢ଼ରୂପେ ସୁରକ୍ଷିତ ନୁହେ, ଯାହା ଦୀର୍ଘ ଅବରୋଧ ଫଳରେ ଅବସନ୍ନପ୍ରାପ୍ତ, ଯେଉଁ ସ୍ଥାନର ଅଧ୍ୟକ୍ଷ ମୂର୍ଖ ଓ ବ୍ୟସନୀ ଏବଂ ଯୋଦ୍ଧୃଗଣ ଭୀରୁ, ସେହି ଦୁର୍ଗର ବିପତ୍ତି ଯେ ସୁନିଶ୍ଚିତ, ଏଥିରେ କୌଣସି ସନ୍ଦେହ ନାହିଁ । ଏହି ଶତ୍ରୁ ଦୁର୍ଗରେ ସେହି ସମସ୍ତ ଦୋଷରୁ ଗୋଟିଏ ସୁଦ୍ଧା ଦେଖାଯାଏ ନାହିଁ । ଶତ୍ରୁ-ଦୁର୍ଗ ଲଙ୍ଘନ କରିବା ସକାଶେ ନୀତିଶାସ୍ତ୍ରରେ ଚାରିଗୋଟି ଉପାୟ କୁହାଯାଇଅଛି, ଯଥା—ଦୀର୍ଘକାଳସ୍ଥାୟୀ ଅବରୋଧ, ଭେଦସଂଘଟନ, ପ୍ରଚଣ୍ଡ ପୌରୁଷ ଓ ଆକସ୍ମିକ ଆକ୍ରମଣ । ବର୍ତ୍ତମାନ ଏହି ବିଷୟରେ ଯଥାସାଧ୍ୟ ଚେଷ୍ଟା କରିବା ଉଚିତ ।

---

• ଏଭଳେ ଇନ୍ଦ୍ରପ୍ରସ୍ଥ-ଜୟ ହୁଏ ନାହିଁ ଯାର;

ଚିତ୍ରବର୍ଣ୍ଣ—ଉତ୍ତମ କଥା । ସେହିପରି କରାଯାଉ ।

ସୂର୍ଯ୍ୟୋଦୟ ପୂର୍ବରୁ ଦୁର୍ଗର ସିଂହଦ୍ୱାରରେ ଯେତେବେଳେ ଯୁଦ୍ଧ ଆରମ୍ଭ ହେଲା, ସେହି ସମୟରେ ମେଘବର୍ଣ୍ଣ ଓ ତାହାର ଅନୁଚରମାନେ ଦୁର୍ଗ ମଧ୍ୟରେ ଥିବା ପ୍ରତ୍ୟେକ ଗୃହରେ ଯାଇ ଅଗ୍ନି ସଂଯୋଗ କରିଦେଲେ । ସେତେବେଳେ ସେଠାରେ ଏପରି ଏକ କୋଳାହଳ ଉଠିଲା ଯେ, ଶତ୍ରୁ ଦୁର୍ଗ ଅଧିକାର କରି ପକାଇଛି । ସେହି କୋଳାହଳ ଶୁଣି ଏବଂ ସିଂହଆଡ଼େ ଘର ସବୁ ଜଳୁଥିବା ଦେଖି ରାଜହଂସର ଦୁର୍ଗବାସୀ ପ୍ରାୟ ସମସ୍ତ ସୈନ୍ୟ ସେଠାରୁ ଅତି ଶୀଘ୍ର ଧାଇଁ ଯାଇ ଦୁର୍ଗ ମଧ୍ୟରେ ପ୍ରବେଶ କଲେ । କାରଣ, ଯୁଦ୍ଧ-କ୍ଷେତ୍ରରେ ସମୟ ଓ ସୁଯୋଗ ଦେଖି ଅପୂର୍ବ ସାହସ ସହିତ ଶତ୍ରୁ ପକ୍ଷର ବିନାଶ ଚେଷ୍ଟା କରିବା ଉଚିତ ଏବଂ ଯୁଦ୍ଧରେ ନିଜ ସର୍ବନାଶର ସୂଚନା ପାଇବା ମାତ୍ରକେ ସେଠାରୁ ଶୀଘ୍ର ପଳାୟନ କରି ଆତ୍ମରକ୍ଷା କରିବା ଶ୍ରେୟସ୍କର ।

ରାଜା ରାଜହଂସ ସ୍ୱଭାବତଃ ସୁଖୀ ଓ ମନ୍ଦଗାମୀ; ଏଣୁ ଯୁଦ୍ଧଭୂମିରୁ ଦ୍ରୁତଗତିରେ ଯାଇ ପାରିଲା ନାହିଁ । ସେ ସେନାପତି ସାରସ ସହିତ ଧୀରେ ଧୀରେ ଚାଲୁଅଛି, ଏପରି ସମୟରେ ଶତ୍ରୁପକ୍ଷର ସେନାପତି କୁକ୍କୁଟ ଆସି ତାହାକୁ ବେଷ୍ଟନ କରି ପକାଇଲା । ହିରଣ୍ୟଗର୍ଭ ସାରସକୁ କହିଲା, 'ସେନାପତେ ! ତୁମ୍ଭେ ମୋ ନିମନ୍ତେ କି ହେତୁ ନିଜ ପ୍ରାଣ ନଷ୍ଟ କରିବାକୁ ଯାଉଛ ? ତୁମ୍ଭେ ଏବେ ସୁଦ୍ଧା ପଳାଇ ଆତ୍ମରକ୍ଷା କରି ପାର । ଅତଏବ ଶୀଘ୍ର ଜଳ ମଧ୍ୟରେ ଯାଇ ପ୍ରବେଶ

---

ବନବାସେ ମଧ୍ୟ ତା'ର ଘଟେ ଅନାସ୍ଥର ।

କର । ସବ୍ବଜ୍ଞ ମନ୍ତ୍ରୀଙ୍କ ସମ୍ମତିକ୍ରମେ ମୋ ପୁତ୍ର ଚୂଡ଼ାମଣିକୁ ରାଜପଦରେ ଅଭିଷିକ୍ତ କର ।'

ସାରସ କହିଲା—'ମହାରାଜ, ଏପରି ମର୍ମଭେଦୀ ଅଶୁଭ କଥା କହନ୍ତୁ ନାହିଁ। ଚନ୍ଦ୍ର ସୂର୍ଯ୍ୟ ଥିବାଯାଏ ମହାରାଜଙ୍କର ଜୟ ହେଉ । ଦୁର୍ଗରକ୍ଷା ଭାର ବର୍ତ୍ତମାନ ମୋ ଉପରେ, ଅତଏବ ଏହା ମୋର ଦୃଢ଼ପ୍ରତିଜ୍ଞା ଯେ, ଶତ୍ରୁମାନେ ମୋ ମାଂସ ଓ ରକ୍ତରେ ଦ୍ୱାରପଥ ଲିପ୍ତ କରି ଦୁର୍ଗ ମଧ୍ୟରେ ପ୍ରବେଶ ନ କରିବା ପର୍ଯ୍ୟନ୍ତ ମୁଁ ମୋର କର୍ତ୍ତବ୍ୟରେ ତିଳେ ମାତ୍ର ତ୍ରୁଟି କରିବି ନାହିଁ । ଅପୂର୍ବ ଭାଗ୍ୟବଳ ନ ଥିଲେ ସେବକକୁ କଦାପି କ୍ଷମାଶୀଳ, ଗୁଣଗ୍ରାହୀ, ବଦାନ୍ୟ ଓ ଭୃତ୍ୟବତ୍ସଳ ପ୍ରଭୁ ମିଳେ ନାହିଁ ।'

ରାଜହଂସ—ତାହା ସତ୍ୟ; କିନ୍ତୁ ସୁଦକ୍ଷ ପ୍ରଭୁଭକ୍ତ, ଅନୁରକ୍ତ ଓ ବିଶୁଦ୍ଧହୃଦୟ ଭୃତ୍ୟ ମଧ୍ୟ ପୃଥିବୀରେ ଦୁର୍ଲ୍ଲଭ ।

ସାରସ—'ଶୁଣନ୍ତୁ ମହାରାଜ, ଯୁଦ୍ଧ ଭୂମି ଛାଡ଼ି ବାହାରି ଗଲେ ଯଦି ମରଣ-ଭୟ ଦୂର ହୁଏ, ତାହାହେଲେ ପଳାୟନ କରିବା ଉଚିତ । କିନ୍ତୁ ଜୀବ ଯେତେବେଳେ ଅମର ନୁହେଁ, ଯୁଦ୍ଧସ୍ଥଳରୁ ପ୍ରାଣଭୟରେ ଧାଇଁ ଯିବା ଲାଭ କ'ଣ ? ନିଜ ଯଶରେ କଳଙ୍କ ଲାଗିବ ଯିନା ! ଏବଂ ବାୟୁ ଆଘାତରେ ସମୁଦ୍ରର ତରଙ୍ଗ-ଖେଳା ଯେପରି ଅଳ୍ପକାଳ-ସ୍ଥାୟୀ, ଜୀବଗଣଙ୍କର ଏହି ସଂସାରଲୀଳା ସେପରି ଅନିତ୍ୟ ଓ ଅସାର । ଏଣୁ ପରର ମଙ୍ଗଳ ପାଇଁ ଯେ ଅନିତ୍ୟ ଦେହ ଦାନ କରେ, ସେ ପୁଣ୍ୟବାନ୍—ତା'ର ଜୀବନହିଁ ସାର୍ଥକ । ମହାରାଜ ! ଆପଣ ଯେତେବେଳେ ମୋ'ର ପ୍ରଭୁ—ଆପଣଙ୍କୁ ଯେପରି ହେଉ ରକ୍ଷା କରିବା ଏ ସେବକର ଶ୍ରେଷ୍ଠଧର୍ମ । କାରଣ,

---

ଛାଡ଼ିଲେ ପ୍ରେମର ଗଣ୍ଠି ଅବଶ୍ୟ ମରଣ;

'ରାଜା, ମନ୍ତ୍ରୀ, ମିତ୍ର, କୋଷ, ରାଷ୍ଟ୍ର, ଦୁର୍ଗ, ବଳ,
ପୌରଶ୍ରେଣୀ, ଏହି ଆଠ ରାଜ୍ୟର ସମ୍ବଳ ।'

ଏହି ଅଷ୍ଟ ଅଙ୍ଗରେ ସୁସମ୍ପନ୍ନ ରାଜ୍ୟର ମୂଳ 'ରାଜା' । ଅନ୍ୟାନ୍ୟ ସମସ୍ତ ଅଙ୍ଗଦ୍ୱାରା ସୁରକ୍ଷିତ ଏବଂ ଧନ୍ୱନ୍ତରୀଙ୍କ ଚିକିତ୍ସାଧୀନ ହେଲେହେଁ ପ୍ରାଣ-ବାୟୁ ଅଭାବରେ ଶରୀରର ଯେପରି ଆଉ ରକ୍ଷା ନାହିଁ, ସେପରି ରାଜ୍ୟ ଅନ୍ୟାନ୍ୟ ସମସ୍ତ ଅଙ୍ଗରେ ସୁସମ୍ପନ୍ନ ହେଲେହେଁ ସର୍ବପ୍ରଧାନ ଅଙ୍ଗ ରାଜାର ଅଭାବରେ ତାହା ରକ୍ଷା ପାଏ ନାହିଁ—ଛାରଖାର ହୋଇଥାଏ । ପୁଣି, ପଦ୍ମ ସୂର୍ଯ୍ୟୋଦୟରେ ପ୍ରସ୍ଫୁଟିତ ଏବଂ ସୂର୍ଯ୍ୟାସ୍ତରେ ମୁଦ୍ରିତ ହୋଇଥାଏ । ସେପରି ରାଜାର ଅଭ୍ୟୁଦୟରେ ପ୍ରଜାମାନଙ୍କର ଉନ୍ନତି ଏବଂ ତାହାର ପତନରେ ସେମାନଙ୍କର ବିନାଶ ।'

ପରେ ଶତ୍ରୁପକ୍ଷର ସେନାପତି କୁକ୍କୁଟ ହିରଣ୍ୟଗର୍ଭର ଦେହରେ ସୁତୀକ୍ଷ୍ଣ ନଖାଘାତ କରିବାକୁ ଲାଗିଲା । ସାରସ ସେହିକ୍ଷଣି ଦ୍ରୁତଗତିରେ ଯାଇ ନିଜ ଶରୀରଦ୍ୱାରା ରାଜହଂସକୁ ଆଚ୍ଛାଦନ କରିଦେଲା । କିଛିକାଳପରେ ସେନାପତି ସାରସ କୁକ୍କୁଟର ନଖ ଓ ଚଞ୍ଚୁର ପ୍ରହାରରେ ଅତିଶୟ ଆହତ ହୋଇ ସୁଦ୍ଧା ନିଜ ଦେହରେ ରାଜହଂସକୁ ଘୋଡ଼ାଇ ରଖି ତାହାକୁ ଜଳ ମଧ୍ୟରେ ନେଇ ଫିଙ୍ଗିଦେଲା । ପରେ ସେ ପ୍ରଖର ଚଞ୍ଚୁ ପ୍ରହାରରେ କୁକ୍କୁଟକୁ ବଧ କଲା । ସେହିକ୍ଷଣି ବହୁସଂଖ୍ୟକ ଶତ୍ରୁ ସୈନ୍ୟ ଏକ ସମୟରେ ଆସି ସାରସର ପ୍ରାଣ ସଂହାର କଲେ । ପରେ ରାଜା ଚିତ୍ରବର୍ଣ୍ଣ ଦୁର୍ଗ ମଧ୍ୟରେ ପ୍ରବେଶ କରି ସେଠାର ସମସ୍ତ ଦ୍ରବ୍ୟ ଅଧିକାର କରିନେଲା । ଶେଷରେ ବନ୍ଦୀମାନଙ୍କ ଜୟଶବ୍ଦରେ ଆନନ୍ଦିତ ଓ ଉତ୍ସାହିତ ହୋଇ ସସୈନ୍ୟ ନିଜ ଦେଶକୁ ବାହୁଡ଼ିଲା ।

---

'ବିଗ୍ରହ'—ପ୍ରବନ୍ଧେ ତାର ମିଳେ ବିବରଣ ।

ରାଜପୁତ୍ରଗଣ—ଗୁରୁଦେବ ! ରାଜହଂସର ସୈନ୍ୟ ମଧ୍ୟରେ ସେହି ସାରସହିଁ ଯଥାର୍ଥ ପୁଣ୍ୟବାନ୍ । ସେ ନିଜ ଦେହ ଦାନ କରି ପ୍ରଭୁର ପ୍ରାଣ ରକ୍ଷା କଲା । ମାଆ ଗର୍ଭରେ ଅନେକ ବାଳୁଙ୍ଗା ମାଈ ଆକୃତି ଧରି ଜନ୍ମଲାଭ କରିଥାନ୍ତି—କିନ୍ତୁ ସେମାନଙ୍କ ମଧ୍ୟରେ ଦୃଢ଼ସ୍କନ୍ଧ, ଉଚ୍ଚ-ଶୃଙ୍ଗ, ମହାବଳ ଷଣ୍ଢର ସଂଖ୍ୟା ବା କେତେ ? ଅସଂଖ୍ୟ ମନୁଷ୍ୟ-ସନ୍ତାନ ମଧ୍ୟରେ ଏପରି ମହାପୁରୁଷ ବିରଳ, ଯେ ପ୍ରଭୁର ପ୍ରାଣରକ୍ଷା ନିମନ୍ତେ ନିଜ ଜୀବନ ଅକାତରଭାବରେ ଦେଇପାରେ ।

ବିଷ୍ଣୁଶର୍ମା—ସେହି ମହାତ୍ମା ସାରସ ନିଜ ପୁଣ୍ୟବଳରେ ବିଦ୍ୟାଧରୀମାନଙ୍କଦ୍ୱାରା ବେଷ୍ଟିତ ହୋଇ ଅନନ୍ତ ଅକ୍ଷୟ ସ୍ୱର୍ଗ-ସୁଖ ଭୋଗକରୁ । କଥିତ ଅଛି—ଯେଉଁ ସମସ୍ତ କୃତଜ୍ଞପ୍ରାଣ, ପ୍ରଭୁଭକ୍ତ-ବୀର ପ୍ରଭୁ ସନ୍ମୁଖେ ଶତ୍ରୁ-ସେନା ମଧ୍ୟରେ ଅସୀମ ସାହସ ସହିତ ଯୁଦ୍ଧ କରୁ କରୁ ପ୍ରାଣ ହରାନ୍ତି, ସେମାନେ ଅନିତ୍ୟ ନରଦେହ ତ୍ୟାଗ କରି ସନାତନ ସ୍ୱର୍ଗ-ଲୋକ ଲାଭ କରନ୍ତି । ତୁମ୍ଭେମାନେ ବର୍ତ୍ତମାନ 'ବିଗ୍ରହ'ର ଭାବ ବୁଝି ପାରିଲ ତ ?

ରାଜପୁତ୍ରଗଣ—ଆପଣଙ୍କ ଅନୁଗ୍ରହରୁ ତାହା ଶୁଣି ପରମ ସୁଖୀ ହେଲୁଁ ।

ବିଷ୍ଣୁଶର୍ମା—ମୁଁ ଆଶୀର୍ବାଦ କରେଁ—ଅଶ୍ୱ, ହସ୍ତୀ, ରଥୀ, ପଦାତିକ ପ୍ରଭୃତି ସୈନ୍ୟ ଧରି ତୁମ୍ଭମାନଙ୍କୁ ଯେପରି ଯୁଦ୍ଧରେ ଯୋଗ ଦେବାକୁ ନ ହେଉ । ତୁମ୍ଭେମାନେ ସୁନୀତି ଓ ସୁମନ୍ତ୍ରଣା ବଳରେ ସକଳ ଶତ୍ରୁ ନିରାକୃତ କର, ସେଥି ସକାଶେ ଯେପରି ଦାରୁଣ ବିଗ୍ରହ କାର୍ଯ୍ୟରେ ଲିପ୍ତ ହେବାକୁ ନ ହୁଏ ।

—** * **—

# ଚତୁର୍ଥ ଭାଗ

## —ସନ୍ଧି—

ବିଗ୍ରହ ପ୍ରକରଣ ଶ୍ରବଣ କରିବା ପରେ ପାଟଳୀପୁତ୍ରର ରାଜକୁମାରମାନେ ବିଷ୍ଣୁଶର୍ମାଙ୍କୁ କହିଲେ, "ଗୁରୁଦେବ ! ଆପଣଙ୍କ ଅନୁଗ୍ରହରୁ ଆମେମାନେ ସୁସ୍ପଷ୍ଟରୂପେ ବୁଝିପାରିଲୁଁ ଯେ, ପ୍ରେମ ଜଗତର ପ୍ରଧାନ ଶକ୍ତି; ମାନବ ଜୀବନ ପ୍ରେମରେ ହିଁ ଗଠିତ ଏବଂ ପ୍ରେମଗ୍ରନ୍ଥି ଛିନ୍ନ ହୋଇପଡ଼ିଲେ ମୃତ୍ୟୁ ଅନିବାର୍ଯ୍ୟ । ଅନୁଗ୍ରହପୂର୍ବକ ବର୍ତ୍ତମାନ ସନ୍ଧି ବିଷୟ କହନ୍ତୁ ।"

ବିଷ୍ଣୁଶର୍ମା ପ୍ରସନ୍ନ ମୁଖରେ କହିଲେ, "ହିତକଥା ଶ୍ରବଣରେ ତୁମମାନଙ୍କର ଆଗ୍ରହ ଓ କୌତୂହଳ ଦେଖି ମୁଁ ଅତ୍ୟନ୍ତ ଆପ୍ୟାୟିତ ହୋଇଅଛି । ରାଜନୀତି ଚର୍ଚ୍ଚା ରାଜା ଓ ରାଜପୁତ୍ରମାନଙ୍କ ଦୈନନ୍ଦିନ କର୍ତ୍ତବ୍ୟର ପ୍ରଧାନ ଅଙ୍ଗ । ସୁଖର ବିଷୟ, ବିଗ୍ରହ ପ୍ରସଙ୍ଗରୁ ରାଜନୀତି ସମ୍ବନ୍ଧରେ ତୁମେମାନେ ଯଥେଷ୍ଟ ଜ୍ଞାନ ଲାଭ କରିଅଛ । ସନ୍ଧି ବିଷୟର ଅନୁଶୀଳନରେ ରାଷ୍ଟ୍ରନୀତିକ ଜ୍ଞାନ ପୂର୍ଣ୍ଣତା ପ୍ରାପ୍ତ ହେବ । ଅତଏବ ତାହା କହୁଅଛି, ମନ ଦେଇ ଶୁଣ । ଏଥିରୁ ବୁଝିପାରିବ ଯେ,

---

ସଂସାରରେ ସତ୍ୟ ଆଚରଣ କରିବା ପ୍ରଧାନ ଧର୍ମ ।

ପ୍ରେମ-ସୁଧା-ସେଚନରେ ମୃତ୍ୟୁର କରାଳ ଛାୟା ଅପସୃତ ହୋଇଯାଏ, ନବୀନ ଜୀବନ ବିକସିତ ହୋଇଉଠେ । ସନ୍ଧିର ପ୍ରଥମ ଶ୍ଳୋକ :—

"ଉଭୟ ରାଜାଙ୍କ ଯୁଦ୍ଧ ହେଲା ଘୋରତର,
ଦୁଇ ପକ୍ଷେ ବହୁ ସୈନ୍ୟ ଗଲେ ଯମଘର;
ଗୃଧ୍ର ଚକ୍ରବାକ କରି ବିବାଦ ଭଞ୍ଜନ,
ଅବିଳମ୍ବେ କଲେ ସନ୍ଧି ଦେଇ ସୁମନ୍ତ୍ରଣ ।"

ରାଜପୁତ୍ରଗଣ ପ୍ରଶ୍ନ କଲେ, "ଗୃଧ୍ର ଓ ଚକ୍ରବାକ କି ପରାମର୍ଶ ଦେଇ ସନ୍ଧି ସ୍ଥାପନ କରିଥିଲେ ?"

ବିଷ୍ଣୁଶର୍ମା କହିଲେ :—

## ହଂସ ଓ ମୟୂର କଥାର ଉପସଂହାର

ପରେ ଉକ୍ତ ରାଜା ରାଜହଂସ କହିଲା, "ଆମ ଦୁର୍ଗରେ ଅଗ୍ନିସଂଯୋଗ କଲା କିଏ ? ବିପକ୍ଷର ଲୋକେ ଆସି କଣ ଏହି କାଣ୍ଡ କଲେ ? ନା ଆମର ଦୁର୍ଗବାସୀ କେହି ଶତ୍ରୁପକ୍ଷର ଷଡ଼ଯନ୍ତ୍ରରେ ଲିପ୍ତ ହୋଇ ଏହି କାର୍ଯ୍ୟ କଲା ?"

ଚକ୍ରବାକ ଉତ୍ତର କଲା, "ମହାରାଜ, ଆପଣଙ୍କର ଅକୃତ୍ରିମ ବନ୍ଧୁ ମେଘବର୍ଣ୍ଣ ନାମକ ସେଇ କାକ ଏହି ସ୍ଥାନରୁ ସପରିବାର ଚାଲି ଯାଇଛି । ସେ ବୋଧହୁଏ, ଏ କାଣ୍ଡ ଘଟାଇଅଛି ।" ରାଜହଂସ କିଛିକ୍ଷଣ ଚିନ୍ତା କରି କହିଲା, "ଏହା ଅସମ୍ଭବ ନୁହେଁ । ଆମମାନଙ୍କର ଦୁରଦୃଷ୍ଟି ଯୋଗେ ଏପରି ଘଟିଅଛି । କଥିତ ଅଛି, ଯେ କୌଣସି

ଛାଡ଼ିଲେ ପ୍ରେମର ଗ୍ରନ୍ଥି ଅବଶ୍ୟ ମରଣ,

କାର୍ଯ୍ୟ ବହୁ ଯତ୍ନରେ ସୁସାଧିତ ହୋଇଥାଏ । ଉକ୍ତ କାର୍ଯ୍ୟରେ ଯଦି ବାଧା-ବିଡ଼ମ୍ବନ ଘଟେ, ତାହାହେଲେ ମନ୍ତ୍ରୀମାନଙ୍କୁ ଦୋଷୀ ବୋଲି ଧରିନେବା ଅନୁଚିତ । ଅଦୃଷ୍ଟ ଦୋଷରେ ଏପରି ଘଟେ, ସନ୍ଦେହ ନାହିଁ ।”

ମନ୍ତ୍ରୀ କହିଲା, “ମୂଢ଼ ବ୍ୟକ୍ତିମାନେ ବିପାକରେ ପଡ଼ି, ନିଜ କର୍ମଦୋଷ ବୁଝି ନପାରି, ଦୈବନିନ୍ଦା କରିଥାନ୍ତି । ଯେ ହିତୈଷୀ ବନ୍ଧୁର କଥା ମାନେ ନାହିଁ, ସେ ଦୁର୍ବୁଦ୍ଧି କୂର୍ମ ପରି ଘୋର ଦୁର୍ଗତିରେ ପଡ଼େ ।”

ରାଜା—କପରି ?

ମନ୍ତ୍ରୀ—

## ଦୁଇ ହଂସ ଓ କଚ୍ଛପ

ମଗଧ ଦେଶରେ ଫୁଲ୍ଲୋତ୍ପଳ ନାମରେ ଗୋଟିଏ ସରୋବର ଅଛି । ସେଠାରେ ବହୁଦିନରୁ ସଙ୍କଟ ଓ ବିକଟ ନାମକ ଦୁଇ-ଗୋଟି ହଂସ ବାସ କରୁଥାନ୍ତି । କମ୍ବୁଗ୍ରୀବ ବୋଲି ଏକ କୂର୍ମ ବି ସେଠାରେ ଥିଲା । ସେ ସେମାନଙ୍କର ବନ୍ଧୁ ।

ଥରେ କେତେଜଣ ଧୀବର ମତ୍ସ୍ୟ ଧରିବା ପାଇଁ ଉକ୍ତ ସରୋବର ତୀରରେ ଯାଇ ଉପସ୍ଥିତ ହେଲେ । ସେମାନଙ୍କ ମଧ୍ୟରୁ ଜଣେ ସଙ୍ଗୀମାନଙ୍କୁ କହିଲା—“ଆମେମାନେ ଆଜି ଏଠାରେ ରହି, କାଲି ସକାଳେ ଏହି ସରୋବରର ମତ୍ସ୍ୟ, କଚ୍ଛପ ଇତ୍ୟାଦି ଜନ୍ତୁ ମାରିବା ।” ଧୀବରମାନଙ୍କର ଏହି ମନ୍ତ୍ରଣା ଶୁଣିପାରି କୂର୍ମ କମ୍ବୁଗ୍ରୀବ

ପୁନରସ୍ତୁ ପ୍ରେମାମୃତେ ନବୀନ ଜୀବନ ।

ପ୍ରମାଦ ଗଣିଲା । ସେ ହଂସ ଦୁହିଁଙ୍କ ନିକଟକୁ ବଦନରେ କହିଲା— "ଧୀବରମାନଙ୍କର ପରାମର୍ଶ ଶୁଣିଲ ତ ? ବର୍ତ୍ତମାନ ଘୋର ବିପଦ ଉପସ୍ଥିତ ! କଣ କରିବ ? ଶୀଘ୍ର ପ୍ରତିକାର ସ୍ଥିର କରିବା ଶ୍ରେୟସ୍କର । ଆଉ ବିଳମ୍ବ କଲେ ଚଳିବ ନାହିଁ । ଏ ସରୋବରରେ ମୁଁ ଏପରି ଅନେକ ଦୁର୍ଘଟଣା ଦେଖିଅଛି । ଏଠାରେ ଥରେ 'ଯଦ୍‌ଭବିଷ୍ୟ' ନାମକ ଗୋଟିଏ ମତ୍ସ୍ୟ ନିଜବୁଦ୍ଧି ଦୋଷରେ ପ୍ରାଣ ହରାଇଥିଲା ।"

ଦୁଇ ହଂସ—କପରି ?

କୂର୍ମ—

## ତିନି ମତ୍ସ୍ୟ

କେତେକ ଦିନ ପୂର୍ବେ ଏହି ସରୋବରରେ 'ଅନାଗତ-ବିଧାତା', 'ପ୍ରତ୍ୟୁତ୍ପନ୍ନମତି' ଓ 'ଯଦ୍‌ଭବିଷ୍ୟ' ନାମରେ ତିନିଗୋଟି ମତ୍ସ୍ୟ ବାସ କରୁଥିଲେ । ଏପରି ଦିନେ ଧୀବରମାନେ ଏଠାରେ ପହଞ୍ଚିବାରୁ, ତିନି ମତ୍ସ୍ୟ ପରସ୍ପର ମନ୍ତ୍ରଣା କରିବାକୁ ଲାଗିଲେ । ଅନାଗତ-ବିଧାତା ଏଠାରେ ରହିବା ବିପଜ୍ଜନକ ମନେକରି ତତ୍‌କ୍ଷଣାତ୍ ଅନ୍ୟ ଏକ ଜଳାଶୟକୁ ପ୍ରସ୍ଥାନ କଲା । ପ୍ରତ୍ୟୁତ୍ପନ୍ନମତି ଯଦ୍‌ଭବିଷ୍ୟକୁ କହିଲା, "କାଲି ଯେ କଣ ଘଟିବ ତାହାର ସ୍ଥିରତା କଣ ? ମୁଁ ଏ ସ୍ଥାନ ଛାଡ଼ି ଯିବ ନାହିଁ । ବିପଦ ଉପସ୍ଥିତ ହେଲେ ଉପାୟ ଚିନ୍ତା କରିବ । କଥା ଅଛି—

"ଉପସ୍ଥିତ ବିପଦ ଯେ କରେ ନିବାରଣ,
କହନ୍ତି ବୁଦ୍ଧିମାନ ତା'କୁ ସଜ୍ଜନ' ।"

---

ବିପାକେ ପଡ଼ିଲେ ମୂଢ଼ ଦୈବ୍ୟ ନିନ୍ଦା କରେ,

ଯଦ୍‌ଭବିଷ୍ୟ କହିଲା, "ଅଦୃଷ୍ଟରେ ଯାହା ଅଛି, ତାହା ଘଟିବଇ ଘଟିବ—କୌଣସି ପ୍ରକାରେ ନିବାରଣ କରାଯାଇ ନପାରେ । ଯାହା ଅଦୃଷ୍ଟରେ ନାହିଁ, ତାହା କଦାପି ଘଟିବ ନାହିଁ । ଏଭଳି ଦୃଢ଼ ବିଶ୍ୱାସ ଜନ୍ମିଲେ, ସକଳ ଦୁଶ୍ଚିନ୍ତା ସ୍ୱତଃ ବିଦୂରିତ ହୋଇଯାଏ । ଦ୍ରବ୍ୟ ଔଷଧ ଗୁଣରେ ଯେପରି ବିଷ-ଜ୍ୱାଳା ଦୂର ହୁଏ, ଏହି ବିଶ୍ୱାସ ସେପରି ସକଳ ଦୁଶ୍ଚିନ୍ତା ନଷ୍ଟ କରିଥାଏ । ଲୋକେ ଏହି ଜ୍ଞାନ-ଔଷଧ କାହିଁକି ଯେ ସେବନ କରନ୍ତି ନାହିଁ, ଏହା ଭାବିବାବେଳକୁ ବୁଦ୍ଧି ପ୍ରତିହତ ହୋଇପଡ଼େ ।"

ପରଦିନ ପ୍ରାତଃକାଳରେ ପ୍ରତ୍ୟୁତ୍ପନ୍ନମତି ଧୀବରମାନଙ୍କ ଜାଲରେ ବନ୍ଧ ହେଲା । ସେ ତ ଭାରି ଚତୁର—ସଙ୍ଗେ ସଙ୍ଗେ ମୁକ୍ତିର ଉପାୟ ଠିକ୍ କରି ନେଲା । ସେ ମୃତପ୍ରାୟ ପଡ଼ି ରହିବାରୁ ଧୀବରମାନେ ସ୍ଥିର କଲେ, ମତ୍ସ୍ୟଟି ବାସ୍ତବରେ ମରିଯାଇଛି । ସେମାନେ ତାହାକୁ ଜାଲରୁ ମୋଚନ କରିଦେବା ମାତ୍ରକେ, ସେ ହଠାତ୍ ଲମ୍ଫ ଦେଇ ଗଭୀର ଜଳରେ ପ୍ରବେଶ କଲା । କିନ୍ତୁ ଯଦ୍‌ଭବିଷ୍ୟ ବୁଦ୍ଧିଦୋଷରେ ଧୀବରମାନଙ୍କ ହାତରେ ପଡ଼ି ପ୍ରାଣତ୍ୟାଗ କଲା ।

•

———

ଉପରୋକ୍ତ ଦୃଷ୍ଟାନ୍ତ ଦେଇ କମ୍ବୁଗ୍ରୀବ ହଂସମାନଙ୍କୁ କହିଲା, 'ଅତଏବ ଆଜ ମୁଁ ଯେପରି ଅନ୍ୟ ହ୍ରଦରେ ଯାଇ ପ୍ରବେଶ କରେଁ, ତୁମେମାନେ ତାହାର ବ୍ୟବସ୍ଥା କର ।'

---

ଆପଣାର କର୍ମଦୋଷ ବୁଝି ତ ନପାରେ ।

ହଂସଦ୍ୱୟ କହିଲେ—ଅନ୍ୟ ଜଳାଶୟକୁ ଯାଇ ପାରିଲେ, ତୁମର ଅବଶ୍ୟ ମଙ୍ଗଳ ହେବ; କିନ୍ତୁ ସ୍ଥଳ-ପଥରେ ଯାଉଛ କିପରି ? ଏହାହିଁ ପ୍ରଧାନ ଚିନ୍ତାର ବିଷୟ ।

କୂର୍ମ—ମୁଁ ତୁମ ଦୁହିଁଙ୍କ ସଙ୍ଗେ ଯେପରି ଶୂନ୍ୟମାର୍ଗରେ ଯାଇପାରେ, ସେପରି କୌଣସି ଉପାୟ ସ୍ଥିର କର ।

ଦୁଇ ହଂସ କିଛି ଉପାୟ ଚିନ୍ତା କରି ନପାରି କୂର୍ମର ପରାମର୍ଶ ଲୋଡ଼ିଲେ । କୂର୍ମ କହିଲା, ଖଣ୍ଡିଏ କାଷ୍ଠର ଦୁଇ ଅଗ୍ରଭାଗ ତୁମେ ଦୁହେଁ ଚଞ୍ଚୁରେ ଧରିବ, ମୁଁ ତାହାର ମଧ୍ୟ ଭାଗଟି ଦୃଢ଼ଭାବରେ ମୁଖରେ ଧରିବି । ଏ ଅବସ୍ଥାରେ ତୁମେମାନେ ଉଡ଼ିଯାଇ ମୋତେ ଅନ୍ୟ ସରୋବରରେ ଛାଡ଼ିବ ।

ବକଟ—ଉପାୟଟି ଭଲ ହୋଇଅଛି; ତେବେ ଯେ ଉପାୟ ସଙ୍ଗେ ଅପାୟ ବି ଚିନ୍ତା କରେ ନାହିଁ, ସେ କଦାପି ସୁବିଜ୍ଞ ପଦବାଚ୍ୟ ନୁହେ ।

'ପରିଣାମ ନ ଭାବିଲା ମୂର୍ଖ ଏକ ବକ,
ନକୁଳ ଖାଇଲା ସବୁ ତାହାର ଶାବକ ।'

କୂର୍ମ—କପରି ?

ହଂସ—

---

ନ ହେବାର ଯାହା, ତା'ର କେ କରେ ଘଟନ ?

# ବକ, ନକୁଳ ଓ ସର୍ପ

ଉତ୍ତର ପ୍ରଦେଶରେ ଗୃଧକୂଟ ନାମରେ ଗୋଟିଏ ପର୍ବତ ଦେଖାଯାଏ । ସେଠାରେ ରେବାନଦୀ ତୀରରେ ଏକ ନ୍ୟଗ୍ରୋଧ ବୃକ୍ଷ ଉପରେ ବକମାନେ ବାସ କରନ୍ତି । ଉକ୍ତ ବୃକ୍ଷତଳସ୍ଥିତ ଗର୍ତ୍ତରେ ଏକ ସର୍ପ ଥିଲା । ସେ ପ୍ରତିଦିନ ବକଶାବକମାନଙ୍କୁ ଭକ୍ଷଣ କରେ ।

ଦିନେ ବକମାନେ ଶାବକ-ଶୋକରେ ଆର୍ତ୍ତନାଦ କରୁଅଛନ୍ତି । ଏହି ସମୟରେ ଗୋଟିଏ ବୃଦ୍ଧ ବକ ସେମାନଙ୍କୁ ଆଶ୍ୱାସନା ଦେଇ କହିଲା – "ତୁମେମାନେ ମୋର ପରାମର୍ଶ ଶୁଣ । କେତେଗୋଟି ମତ୍ସ୍ୟ ମାରି ଆଣ; ଏ ସର୍ପର ଗର୍ତ୍ତଠାରୁ ଆରମ୍ଭ କରି ନକୁଳ ଗର୍ତ୍ତ ପର୍ଯ୍ୟନ୍ତ ମୃତ ମତ୍ସ୍ୟଗୁଡ଼ିକ ଧାଡ଼ି ଧାଡ଼ି ପକାଇ ଦିଅ । ଏହା କଲେ ନକୁଳମାନେ ସେଇ ମତ୍ସ୍ୟ ଖାଇ ଖାଇ କ୍ରମେ ସେହି ମାର୍ଗରେ ସର୍ପ ଗର୍ତ୍ତରେ ଯାଇ ଉପସ୍ଥିତ ହେବେ ଏବଂ ସ୍ୱଭାବ-ଶତ୍ରୁ ସର୍ପକୁ ଦେଖିବା ମାତ୍ରକେ ବଧ କରିବେ ।"

ବକମାନେ ବୃଦ୍ଧ ବକର ପରାମର୍ଶ ତତ୍‌କ୍ଷଣାତ୍ କାର୍ଯ୍ୟରେ ପରିଣତ କଲେ । ନକୁଳମାନଙ୍କଦ୍ୱାରା ସର୍ପଟି ନିଷ୍ଠୁର ଭାବରେ ନିହତ ହେଲା । ପରେ ନକୁଳମାନେ ବକଶାବକମାନଙ୍କର କଳରବ ଶୁଣି ପାରି, ବୃକ୍ଷ ଉପରକୁ ଉଠି ସେମାନଙ୍କୁ ମଧ୍ୟ ଭକ୍ଷଣ କଲେ ।

---

ଯା' ହେବାର ହେବ, ତାହା କେ କରେ ଖଣ୍ଡନ ?

'ଏହି କାରଣରୁହିଁ ଆମେମାନେ କହୁଅଛୁଁ, ଯେ ଉପାୟ ସଙ୍ଗେ ଅପାୟ ଚିନ୍ତା କରେ ନାହିଁ, ସେ ସୁବିଜ୍ଞ ପଦବାଚ୍ୟ ନୁହେଁ । ଆମେ ଦୁହେଁ ତୁମକୁ ଯେତେବେଳେ ଶୂନ୍ୟପଥରେ ନେଇ ଯିବୁଁ, ସେତେବେଳେ ଏହି ଅଦ୍‌ଭୁତ ବ୍ୟାପାର ଦେଖି ଲୋକେ ଅବଶ୍ୟ କିଛି କୁହାକୁହି ହେବେ । ତୁମେ ସେମାନଙ୍କ କଥାର ଯଦି ଉତ୍ତର ଦିଅ, ତାହାହେଲେ ସର୍ବନାଶ ! ଅତଏବ ତୁମେ ଏହି ସ୍ଥାନରେହିଁ ରହ ।'

କୂର୍ମ କହିଲା, "ମୋତେ କଣ ଏତେ ନିର୍ବୋଧ ମନେ କରିଛ ? ମୁଁ କୌଣସି ଲୋକର କଥାରେ ଉତ୍ତର କରିବ ନାହିଁ ।"

ପରେ ବିକଟ ଓ ସଙ୍କଟ କୂର୍ମକୁ ଧରି ଉଡ଼ିବାକୁ ଲାଗିଲେ । ଗଉଡ଼ ବାଳକମାନେ ସେମାନଙ୍କୁ ଦେଖି ପଛେ ପଛେ ଧାଇଁ କହିଲେ—'ବାଃ, କି ଆଶ୍ଚର୍ଯ୍ୟ ବ୍ୟାପାର ! ଦିଓଟି ପକ୍ଷୀ ଗୋଟିଏ କଚ୍ଛପକୁ ଧରି କିପରି ଉଡ଼ି ଯାଉଛନ୍ତି !' ସେମାନଙ୍କ ମଧ୍ୟରୁ ଜଣେ ହସି ହସି କହିଲା, 'କଇଁଛଟା ଯଦି ଖସି ତଳେ ପଡ଼ିଯାଏ, ତାହା-ହେଲେ ତାହାକୁ ଏହି ସ୍ଥାନରେହିଁ ରାନ୍ଧି ଖାଇବା ।'

ଆଉ ଜଣେ ଆନନ୍ଦରେ ଡେଇଁ କହିଲା, 'ତାହାକୁ ଘରକୁ ନେଇଯିବା—ଏଇଠି ଖାଇବା ନାହିଁ ।' ଅନ୍ୟ ଜଣେ ବାଳକ ହେଣ୍ଡି ମାରି ବୋଇଲା—'ମୁଁ ତାହାକୁ କେବେ ଘରେ ନେଇ ଖାଇବି ନାହିଁ, ଏ ସବୁବେଳେ ଖରରେ ପୋଡ଼ି ଖାଇଦେବି ।'

---

ଯେ ଲୁହା ମହୋପକାର କରଇ ସାଧନ,

ଗଉଡ଼ ପିଲମାନଙ୍କର ସେହି ସମସ୍ତ ମର୍ମାନ୍ତକ କଥା ଶୁଣି କଚ୍ଛପ ସହିଷ୍ଣୁତା ଅବଲମ୍ବନ କରି ପାରିଲା ନାହିଁ । ଅତଏବ କ୍ରୋଧରେ ଅଧୀର ହୋଇ ପୂର୍ବ ପରାମର୍ଶ ଏକାବେଳକେ ଭୁଲିଗଲା । ବାଳକମାନଙ୍କୁ କହିପକାଇଲା—'ମୋତେ ଖାଇବ ? ପାଉଁଶ ଖାଅ !'

ମୁଖ ଖୋଲି ଏହା କହିବା କ୍ଷଣି କୂର୍ମଟି ସେହି କାଷ୍ଠଖଣ୍ଡରୁ ଖସି ତଳେ ପଡ଼ିଗଲା ଏବଂ ବାଳକମାନେ ତାହାକୁ ମାରି ଖାଇଲେ ।

—————

ଦୁଇ ହଂସ ଓ କଚ୍ଛପ କଥା ସମାପ୍ତ କରି ମନ୍ତ୍ରୀ ଚକ୍ରବାକ ରାଜା ରାଜହଂସଙ୍କୁ କହିଲା, "ଅତଏବ ମନେ ରଖନ୍ତୁ—

'ହିତୈଷୀ ବନ୍ଧୁର କଥା ନ ଶୁଣେ ଯେ ଜନ,
ଦୁର୍ବୁଦ୍ଧି କଚ୍ଛପ ପରି ତାହାର ପତନ ।' "

ଅନନ୍ତର ସେହି ଗୁପ୍ତଚର ବକ ସେହି ସ୍ଥାନକୁ ଆସି ରାଜାଙ୍କୁ କହିଲା, 'ମହାରାଜ ! ମୁଁ ବରାବର କହି ଆସୁଛି ଯେ, ପ୍ରତି ମୁହୂର୍ତ୍ତ ନିଜ ଦୁର୍ଗର ତତ୍ତ୍ୱାବଧାନ କରିବା ଶ୍ରେୟସ୍କର । ଆପଣମାନେ ତାହା କଲେ ନାହିଁ । ବର୍ତ୍ତମାନ ସେହି ଅସାବଧାନତାର ଫଳ ଭୋଗ କରୁଅଛନ୍ତି । ଗୃଧ୍ର ମନ୍ତ୍ରୀ-ପ୍ରେରିତ ସେହି ମେଘବର୍ଣ୍ଣ ନାମକ କାକଟି ଏହି ଦୁର୍ଗଦାହ କାର୍ଯ୍ୟ କରିଅଛି ।'

ରାଜା ଦୀର୍ଘ ନିଶ୍ୱାସ ତ୍ୟାଗ କରି କହିଲା—ଯେଉଁ ବ୍ୟକ୍ତି ବୃକ୍ଷ ଶାଖାରେ ବସି ନିଶ୍ଚିନ୍ତ ହୋଇ ନିଦ୍ରାଯାଏ, ସେ ଭୂତଳରେ ପତିତ ଓ ବିଶେଷ ଆହତ ହୋଇ ନିଜର ନିର୍ବୁଦ୍ଧିତା ବୁଝିପାରେ । ସେପରି ଯେଉଁ ଲୋକ ଶତ୍ରୁର ଉପକାର କରି ଅଥବା ତାହାର

ବନ୍ଧୁ ହୋଇ, ତାହା ଉପରେ ବିଶ୍ୱାସ ସ୍ଥାପନ କରି ନିଶ୍ଚିନ୍ତ ରହେ, ସେ ସେହିଭଳି ଶତ୍ରୁ ହସ୍ତରେ କ୍ଷତିଗ୍ରସ୍ତ ହୋଇ ଉପଯୁକ୍ତ ଶିକ୍ଷା ଲାଭ କରିଥାଏ ।

ଗୂଢ଼ଚର :—ଏହି ଦୁର୍ଗ ଦଗ୍ଧ କରି ମେଘବର୍ଣ୍ଣ ଯେତେବେଳେ ନିକଟକୁ ପ୍ରତ୍ୟାବୃତ୍ତ ହେଲା, ସେତେବେଳେ ରାଜା ଆପ୍ୟାୟିତ ହୋଇ ତାହାକୁ କହିଲା, 'ମୁଁ ତୁମକୁ କର୍ପୂର ଦ୍ୱୀପର ରାଜପଦରେ ଅଭିଷିକ୍ତ କରିବ । ଶାସ୍ତ୍ରରେ ଲେଖା ଅଛି—ଭୃତ୍ୟ ମହୋପକାର ସାଧନ କଲେ, ତାହାର ସେହି କାର୍ଯ୍ୟ ମନେରଖି ତାହାକୁ ଅନୁରୂପ ପୁରସ୍କାର ଦେଇ କାଯ୍ମନୋବାକ୍ୟରେ ତୁଷ୍ଟ କରିବା ପ୍ରଭୁର ଧର୍ମ ।' ଚକ୍ରବର୍ଣ୍ଣର ଏହି କଥା ଶୁଣି ତାହାର ମନ୍ତ୍ରୀ ଗୃଧ୍ର କହିଲା, "ମହାରାଜ, ମେଘବର୍ଣ୍ଣଙ୍କୁ ରାଜପଦ ପ୍ରଦାନ କରିବା ଅନୁଚିତ; ଅନ୍ୟ କୌଣସି ପୁରସ୍କାର ଦିଅନ୍ତୁ । ମେଘବର୍ଣ୍ଣ ସିଂହାସନର ଯୋଗ୍ୟପାତ୍ର ନୁହନ୍ତି । ଅନ୍ୟର ଅଧିକାର ହରଣ କରି ସେହି ପଦରେ ଅଧମକୁ ନିଯୁକ୍ତ କରିବା ଅସଙ୍ଗତ । ବାଲୁକା ଉପରେ ରେଖା ଟାଣିଲେ ତାହା ଯେପରି ବିଲୁପ୍ତ ହୋଇଯାଏ, ଅପାତ୍ରର ଉପକାର କଲେ ତାହା ସେପରି ନିଷ୍ଫଳ ହୋଇଥାଏ ସିନା । ମହତ୍ ଆସନରେ ନୀଚ ଲୋକକୁ ସ୍ଥାପନ କଲେ ସର୍ବନାଶ ଘଟେ । କଥିତ ଅଛି—

'ଯାହାର ପ୍ରସାଦେ ନୀଚ ଉଚ୍ଚପଦ ପାଏ,
ଶେଷେ ତା'ର ସର୍ବନାଶ କରିବାକୁ ଯାଏ ।'

---

ଯାହାର ପ୍ରସାଦେ ନୀଚ ଉଚ୍ଚ ପଦ ପାଏ,

ଥରେ ଗୋଟିଏ ମୂଷିକ ଜଣେ ମୁନିଙ୍କ ଅନୁଗ୍ରହରେ ବ୍ୟାଘ୍ର ହୋଇ, ଶେଷରେ ସେହି ମୁନିଙ୍କିହିଁ ଖାଇବାକୁ ଧାଇଁଥିଲା !”

ଛଅବର୍ଣ୍ଣ—କପଣ ?

ଗୃଧ୍ର—

## ମୁନି ଓ ମୂଷିକ

ପ୍ରାଚୀନ କାଳରେ ‘ମହାତପା’ ନାମକ ଜଣେ ମୁନି ଗୌତମାରଣ୍ୟରେ ବାସ କରୁଥିଲେ । ଦିନେ ସେ ତାଙ୍କର ଆଶ୍ରମ ନିକଟରେ ଗୋଟିଏ ମୂଷିକ ଶାବକକୁ କାକ-ମୁଖରୁ ପତିତ ହେବାର ଦେଖିଲେ । ଏହି କରୁଣ ଦୃଶ୍ୟରେ ମୁନିଙ୍କର ହୃଦୟ ଅପୂର୍ବ ଦୟାରେ ବିଚଳିତ ହୋଇଗଲା । ସେ ମୂଷିକଶାବକଟିକୁ ନୀଜର ଧାନ୍ୟ ଖାଇବାକୁ ଦେଇ ପାଳନ କରିବାକୁ ଲାଗିଲେ ।

ଦିନେ ଋଷି ଦେଖିଲେ, ଗୋଟାଏ ବିରାଡ଼ି ସେହି ମୂଷିକକୁ ଖାଇବା ଉଦ୍ଦେଶ୍ୟରେ ତାହାର ପଶ୍ଚାଦ୍ଧାବନ କରୁଅଛି । ସୁତରାଂ ସେ ଯୋଗବଳରେ ତାଙ୍କର ମୂଷିକକୁ ଗୋଟିଏ ବଳିଷ୍ଠ ମାର୍ଜାରରେ ପରିଣତ କରିଦେଲେ । ତଥାପି ବିପଦାଶଙ୍କା ଦୂର ହେଲାନାହିଁ । ସେହି ମୂଷିକ ମାର୍ଜାର ହୋଇ ପ୍ରତି ମୁହୂର୍ତ୍ତ କୁକୁର ଭୟରେ ଅବସନ୍ନ ହେବାକୁ ଲାଗିଲା । ଏଣୁ ମୁନି ତାହାକୁ କୁକୁର କରିଦେଲେ ।

ମୂଷିକ କୁକୁର ହୋଇ ସର୍ବଦା ବ୍ୟାଘ୍ର ଭୟରେ ଖ୍ରାତ, କମ୍ପିତ ହେବାକୁ ଲାଗିଲା । ତାହା ଦେଖି ଋଷି ତାହାକୁ ବ୍ୟାଘ୍ର

ଶେଷେ ତାର ନାମ ଲୋପ କରିବାକୁ ଯାଏ ।

କରିଦେଲେ । ମୂଷିକ, ବ୍ୟାଘ୍ର ହେଲେହେଁ, ମୁନିଙ୍କ ଦୃଷ୍ଟିରେ ପୂର୍ବର 'ମୂଷିକ ମାତ୍ର । ଉକ୍ତ ଆଶ୍ରମର ଲୋକମାନେ ତ ଜାଣନ୍ତି, ମୁନି ମୂଷାଟିକୁ ବାଘ କରିଛନ୍ତି—ତାହାକୁ ଦେଖି ସେମାନେ ଭୟ କରିବେ ବା କାହିଁକି ? ସମସ୍ତେ ବ୍ୟାଘ୍ର ନିକଟରେ ନିର୍ଭୀକ ଭାବରେ ବିଚରଣ କରିବାକୁ ଲାଗିଲେ । ଅତଏବ ବ୍ୟାଘ୍ର ନିଜକୁ ଅପମାନିତ ମନେ କଲା, ତାହାର ମନରେ ଭାରି କଷ୍ଟ ହେଲା । ଭାବିଲା, 'ମୁନି ଜୀବିତ ଥିବା ଯାଏ, ମୋ ଜୀବନରେ ଏହି ଘୋର ଅପମାନଜନକ ପ୍ରକୃତ ବୃତ୍ତାନ୍ତ ଲୁଚି ରହିପାରିବ ନାହିଁ ।'

ଏହା ଭାବି, ସେ ତାହାର ମହୋପକାରୀ ମୁନିଙ୍କୁ ବଧ କରିବାକୁ ଉଦ୍ୟତ ହେଲା । ମୁନି ତାହାର ଦୁରଭିସନ୍ଧି ବୁଝିପାରି, ତାହାକୁ କହିଲେ, 'ତୁ ପୁଣି ମୂଷା ହୋଇ ଯା' ।' ଫଳତଃ ବ୍ୟାଘ୍ରଟି ପୁନର୍ବାର ମୂଷିକାକୃତିରେ ପରିଣତ ହେଲା ।

———

ମହାରାଜ ! ନୀଚକୁ ଉଚ୍ଚପଦରେ ପ୍ରତିଷ୍ଠିତ କରିବା ସହଜ ମନେ କରନ୍ତୁ ନାହିଁ । ଥରେ ଗୋଟିଏ ବକ ବଡ଼ ସ୍ୱଚ୍ଛନ୍ଦ ଭାବରେ ଅନେକ ମତ୍ସ୍ୟ ଖାଇଲା । ଶେଷରେ ଅତି ଲୋଭର ବଶବର୍ତ୍ତୀ ହୋଇ କର୍କଟ ଖାଇବାକୁ ଯାଇ ପ୍ରାଣ ହରାଇଲା ।

ଚିତ୍ରବର୍ଣ୍ଣ—କିପରି ?

ଗୃଧ୍ର —

ଉପକାରୀ ଶତ୍ରୁ ସହ କରିବ ମିଳନ,

## ମତ୍ସ୍ୟ, ବକ ଓ କର୍କଟ

ମାଳବ ଦେଶରେ ପଦ୍ମଗର୍ଭ ନାମରେ ଏକ ସରୋବର ଅଛି । ତହିଁ ସେଠାରେ ଗୋଟିଏ ବୃଦ୍ଧ ଅସମର୍ଥ ବକ ନିତାନ୍ତ ଉତ୍କଣ୍ଠିତ ଭାବରେ ବସିଅଛି । ଏପରି ସମୟରେ ଏକ କୁଳୀରକ କଛି ଦୂରରୁ ତାହାକୁ ଦେଖି ପ୍ରଶ୍ନ କଲା, 'ଆପଣ ଆହାର ତ୍ୟାଗ କରି ଏଠାରେ ଏପରି କଷ୍ଟ ଭାବରେ ବସିଅଛନ୍ତି କାହିଁକି ?'

ବକ କହିଲା—'ମତ୍ସ୍ୟହିଁ ମୋ ଜୀବନ ରକ୍ଷାର ଏକ ମାତ୍ର ଉପାୟ । କିନ୍ତୁ ନଗର ପ୍ରାନ୍ତରେ କୈବର୍ତ୍ତମାନେ ପରାମର୍ଶ କରୁଅଛନ୍ତି ଯେ, ଏହି ସରୋବରର ସକଳ ମତ୍ସ୍ୟ ବଧ କରିବେ । ମୁଁ ଏହା ସ୍ୱ-କର୍ଣ୍ଣରେ ଶୁଣିପାରିଲି । ଅତଏବ ଏ ସରୋବରରେ ଜୀବିକା ଅଭାବରୁ ମୋତେ ଅତି ଶୀଘ୍ର ପ୍ରାଣତ୍ୟାଗ କରିବାକୁ ହେବ—ଏହା ଚିନ୍ତା କରି ବସିଅଛି । ମନୋଦୁଃଖରେ ଆହାର କରିବାକୁ ମୋର ଆଉ ଇଚ୍ଛା ହେଉନାହିଁ ।'

ଏକଥା ଶୁଣି ମତ୍ସ୍ୟମାନେ ସ୍ଥିର କଲେ, ବକଟି ସେମାନଙ୍କର ପରମହିତକାରୀ ବନ୍ଧୁ; ସେମାନଙ୍କର ସମୟୋଚିତ କର୍ତ୍ତବ୍ୟ ବୁଝାଇବା କାରଣ ବକକୁ ଅନୁରୋଧ କରିବାକୁ ଉଦ୍ୟତ ହେଲେ । କଥିତ ଅଛି—କୌଣସି ବ୍ୟକ୍ତି ଶତ୍ରୁପକ୍ଷୀୟ ହେଲେହେଁ ଯଦି ଉପକାରୀ ହୁଏ, ତାହାହେଲେ ତାହା ସଙ୍ଗେ ସନ୍ଧି ସ୍ଥାପନ କରିବା ବାଞ୍ଛନୀୟ । କିନ୍ତୁ ମିତ୍ର ପକ୍ଷର ହୋଇ ସୁଦ୍ଧା ଯଦି ଅପକାରୀ ହୁଏ, ତାହ ହେଲେ ତାହା ସହିତ କଦାଚ ସନ୍ଧି ସୂତ୍ରରେ ଆବଦ୍ଧ ହେବା ଅନୁଚିତ । କାରଣ ଉପକାରୀ ବ୍ୟକ୍ତିହିଁ ମିତ୍ର ଏବଂ ଅପକାରୀ ବ୍ୟକ୍ତିହିଁ

---

ଅପକାରୀ ମିତ୍ରକୁ ବି କରିବ ବର୍ଜନ ।

ଶତ୍ରୁ । ଜାତି, ସମ୍ବନ୍ଧ ବା ଅନ୍ୟ କୌଣସି କାରଣରୁ କୌଣସି ଲୋକକୁ ମିତ୍ର ବା ଶତ୍ରୁ ବୋଲି ଗଣନା କରିବା ବୁଦ୍ଧିମାନର କାର୍ଯ୍ୟ ନୁହେଁ ।

•

ମତ୍ସ୍ୟମାନେ ଉକ୍ତ ବକକୁ ପଚାରିଲେ, 'ଆମମାନଙ୍କର ପ୍ରାଣରକ୍ଷା କିପରି ହୋଇପାରିବ ?' ବକ ଉତ୍ତର କଲା—'ଏଠାରୁ କିଛି ଦୂରରେ ଅନ୍ୟ ଏକ ଜଳାଶୟ ଅଛି । ସେଠାକୁ ଗଲେ ତୁମମାନଙ୍କର ଜୀବନରକ୍ଷା ହୋଇ ପାରିବ, ସନ୍ଦେହ ନାହିଁ । ମୁଁ ତୁମମାନଙ୍କୁ ଗୋଟିଏ ଗୋଟିଏ କରି ସେହି ସ୍ଥାନରେ ଛାଡ଼ି ଆସିବି । ମୁଁ ଏତିକି ମାତ୍ର ସାହାଯ୍ୟ କରିପାରିବି ।'

ମତ୍ସ୍ୟମାନେ ଆଶ୍ୱସ୍ତ ହେଲେ । ଭବିଷ୍ୟତ ବିପଦ ଦୃଷ୍ଟିରେ ସେମାନେ ବକର ସମୟୋଚିତ ପ୍ରସ୍ତାବରେ ସମ୍ମତ ହେଲେ । ପରେ ସେହି ଦୁଷ୍ଟ ବକ ଥରକେ ଗୋଟିଏ ମାଛ ଧରି ଯାଇ କୌଣସି ନିର୍ଜନ ସ୍ଥାନରେ ତାହାକୁ ଭକ୍ଷଣ କରି, ଫେରି କହିବାକୁ ଲାଗିଲା ଯେ, ତାହାକୁ ଅନ୍ୟ ସରୋବରରେ ସୁଖରେ ଛାଡ଼ି ଆସିଛି । ତାହାର କଥାରେ ବିଚରା ମତ୍ସ୍ୟମାନେ ଗଭୀର ଆସ୍ଥା ସ୍ଥାପନ କଲେ ।

•

ତନେ ସେହି କୁଳୀରକ ବକକୁ କହିଲା—'ମହାଶୟ, ଅନୁଗ୍ରହପୂର୍ବକ ମୋତେ ବି ସେହି ଜଳାଶୟରେ ଛାଡ଼ି ଆସନ୍ତୁ ।' ବକ ଅତିଶୟ ଆନନ୍ଦରେ ଅଧୀର ହୋଇଗଲା—ଅପୂର୍ବ କର୍କଟ ମାଂସର ଲୋଭ ସମ୍ବରଣ କରିପାରିଲା ନାହିଁ । ସେ କର୍କଟକୁ ସମାଦର ପୂର୍ବକ ନେଇ ଏକ ସ୍ଥଳ ଭାଗରେ ଉପସ୍ଥିତ ହେଲା ।

---

ଶତ୍ରୁ ହସ୍ତେ ରକ୍ଷା ନାହିଁ ଦେଖ ବିଜ୍ଞଜନ,

କୁଳୀରକ ଜକ୍ତ ସ୍ଥାନଟି ମତ୍ସ୍ୟ-କଣ୍ଟକରେ ପୂର୍ଣ୍ଣ ହୋଇଥିବାର ଦେଖି ଭାବିଲା, 'ଆହା, ମୋର ବି ଜୀବନ ଗଲା । ମୁଁ ବଡ଼ ହତଭାଗ୍ୟ । ଯାହାହେଉ, ଏବେତେବେଳେ ଜୀବନ ରକ୍ଷା ପାଇଁ ଯଥାସାଧ୍ୟ ଚେଷ୍ଟା କରିବା ବିଧେୟ । ବିପଦ ନ ପହଞ୍ଚିବା ଯାଏଁ ବିପଦାଶଙ୍କା କରିବା ଭଲ । କିନ୍ତୁ ବିପଦ ଉପସ୍ଥିତ ହେଲେ, ମନରୁ ସକଳ ଭୟ ଦୂର କରି ପ୍ରାଣପଣରେ ତାହାର ପ୍ରତିକାର କରିବା ଶ୍ରେୟସ୍କର ।'

ଏହା ଭାବି କୁଳୀରକ ଶେଷରେ ବକର ଗ୍ରୀବା ଛେଦନ କରି ଦେଲା । ବକ ତତ୍କ୍ଷଣାତ୍ ପଞ୍ଚତ୍ୱ ପ୍ରାପ୍ତ ହେଲା ।

---

ରାଜା ଚିତ୍ରବର୍ଣ୍ଣ ପୁନର୍ବାର କହିଲା—ମୁଁ ମନେ ମନେ ଯାହା କଳ୍ପନା କରିଅଛି, ତାହା ଶୁଣ । ମେଘବର୍ଣ୍ଣଙ୍କୁ ଏହି କର୍ପୂରଦ୍ୱୀପର ରାଜପଦରେ ନିଯୁକ୍ତ କଲେ, ସେ ଏହି ସ୍ଥାନର ଯାବତୀୟ ଉତ୍କୃଷ୍ଟ ପଦାର୍ଥ ସର୍ବଦା ଆମମାନଙ୍କୁ ଉପହାର ସ୍ୱରୂପ ପଠାଇବେ । ଆମେମାନେ ବିନ୍ଧ୍ୟାଚଳରେ ରହି ପରମ ସୁଖ ସନ୍ତୋଷରେ ସମସ୍ତ ବିଳାସ ସାମଗ୍ରୀ ଭୋଗ କରିବା ।

ଦୂରଦର୍ଶୀ ଗୃଧ୍ର ନହସି ରହିପାରିଲା ନାହିଁ । କହିଲା, 'ମହାରାଜ, ଯେଉଁ ବ୍ୟକ୍ତି ମନେ ମନେ ମନୋରଥ କଳ୍ପନା କରି ଆହ୍ଲାଦରେ ମାତି ଉଠେ, ସେ ଅଶେଷ ଲାଞ୍ଛନା ସହ୍ୟ କରିଥାଏ—ଶକ୍ତୁ ଭାଣ୍ଡ ଭଗ୍ନ କରି ଥରେ ଜଣେ ବ୍ରାହ୍ମଣ ଯେପରି ଲାଞ୍ଛିତ ହୋଇଥିଲା ।'

ଚିତ୍ରବର୍ଣ୍ଣ—କିପରି ?

ଗୃଧ୍ର —

---

କରି ଯୁଦ୍ଧ ଶେଷେ ପ୍ରାଣ କରେ ବିସର୍ଜନ ।

## ବ୍ରାହ୍ମଣ ଓ ଶକ୍ତୁଭାଣ୍ଡ

ଦେବୀକୋଟ ନଗରରେ ଦେବଶର୍ମା ନାମକ ଜନୈକ ବ୍ରାହ୍ମଣ ବାସ କରୁଥିଲେ । ସେ ମହାବିଷୁବ ସଂକ୍ରାନ୍ତି ଦିନ ଗୋଟିଏ ଶକ୍ତୁଭାଣ୍ଡ ପ୍ରାପ୍ତ ହେଲେ । ସେ ସେହି ଶକ୍ତୁ ନେଇ ପ୍ରଖର ରୌଦ୍ରରେ ଅତ୍ୟନ୍ତ ସନ୍ତାପିତ ହୋଇ ଜନୈକ କୁମ୍ଭକାରର ଭାଣ୍ଡ ପରିପୂର୍ଣ୍ଣ ମଣ୍ଡପରେ ଯାଇ ବିଶ୍ରାମ ନେଲେ ।

ଉକ୍ତ ଶକ୍ତୁଭାଣ୍ଡର ସୁରକ୍ଷା ପାଇଁ ହସ୍ତରେ ଯଷ୍ଟି ଧରି ଭାବିଲେ, "ମୁଁ ଏହି ଛତୁ ବିକ୍ରି କରି ଯଦି କିଛି ଧନ ଲାଭ କରେଁ, ତାହାହେଲେ ସେହି ଧନରେ ଏଠାରୁ ଘଟ ଓ ଶରା କ୍ରୟ କରି ନେବି । ପୁଣି ତାହା ବିକ୍ରୟ କରି ଯେଉଁ ଧନ ପାଇବି, ତାହା ନାନା ଉପାୟରେ ବଢ଼ାଇ, ସେଥିରେ ସୁପାରି, ବସ୍ତ୍ର ଇତ୍ୟାଦି ଦ୍ରବ୍ୟ ବାରମ୍ବାର କ୍ରୟ ବିକ୍ରୟ କରି ଧନୀ ହୋଇ ଉଠିବି । ଏପରି ବାଣିଜ୍ୟରେ କ୍ରମଶଃ ଏକ ଲକ୍ଷ ମୁଦ୍ରା ସଞ୍ଚୟ କରିବା ପରେ, ଚାରି ଜଣ ସ୍ତ୍ରୀଙ୍କୁ ବିବାହ କରିବି । ସେହି ଚାରିଜଣ ପତ୍ନୀ ମଧ୍ୟରେ ଯେ ସର୍ବାପେକ୍ଷା ଅଧିକ ରୂପବତୀ ଓ ଯୁବତୀ ଦେଖାଯିବ, ତାହାକୁ ଅଧିକ ପ୍ରେମ, ଆଦର କରିବି । ଫଳରେ ତାହାର ସପତ୍ନୀମାନେ ଈର୍ଷାନ୍ୱିତ ହୋଇ ଯେତେବେଳେ ପରସ୍ପର କଳହ ଆରମ୍ଭ କରିବେ, ସେତେବେଳେ ମୁଁ ଅତିଶୟ କ୍ରୁଦ୍ଧ ହୋଇ ସେମାନଙ୍କୁ ଯଷ୍ଟି ପ୍ରହାର କରିବି ।"

ଏପରି କଳ୍ପନା କରି, ବ୍ରାହ୍ମଣ ସତକୁ ସତ କ୍ରୋଧରେ ଅଧୀର ହୋଇ ହସ୍ତସ୍ଥିତ ଯଷ୍ଟିଟି ଉଠାଇ ଜୋରରେ ନିକ୍ଷେପ

---

ସମାନ ସମାନେ ହେଲେ ସମର ଘଟନା,

କଲେ । ଲଗୁଡ଼ାଘାତରେ ତାଙ୍କର ଶକ୍ତ୍ ଖଣ୍ଡିଟି ଚୂର୍ଣ୍ଣ ହୋଇଗଲା; ସଙ୍ଗେ ସଙ୍ଗେ କୁମ୍ଭକାରର କେତୋଟି ଖଣ୍ଡ ବ ଭାଙ୍ଗି ପଡ଼ିଲା । ସେହି ସମସ୍ତ ହାଣ୍ଡି, ଶରା ଇତ୍ୟାଦିର ଶବ୍ଦ ଶୁଣି କୁମ୍ଭାର ସେଠାକୁ ଧାଇଁ ଆସିଲା ଏବଂ ମୂର୍ଖ ବ୍ରାହ୍ମଣକୁ ଖୁବ୍ ତିରସ୍କାର କରି, ଧକ୍କା ଦେଇ ସେଠାରୁ ବାହାର କରିଦେଲା ।

---

ପରେ ରାଜା ଶିବବର୍ଣ୍ଣ ଗୃଧ୍ର ମନ୍ତ୍ରୀକୁ ଗୋପନରେ ପଚାରିଲା, "ତାହାହେଲେ ମୋର ବର୍ତ୍ତମାନ କର୍ତ୍ତବ୍ୟ କଣ ?"

ଗୃଧ୍ର—ରାଜା ଯଦି ମଦମତ୍ତ ମାତଙ୍ଗ ତୁଲ୍ୟ ଅଭିମାନରେ ଅନ୍ଧହୋଇ କୁମାର୍ଗରେ ଯାଏ, ତାହାହେଲେ ତାହାର ସକଳ ଉପଦେଷ୍ଟା ମନ୍ତ୍ରୀ ପ୍ରଜାମାନଙ୍କଦ୍ୱାରା ନିନ୍ଦିତ ହୁଅନ୍ତି । ଆମେମାନେ କଣ ବାହୁବଳରେ ଶତ୍ରୁ ଦୁର୍ଗ ଭଗ୍ନ କରିପାରିଅଛୁଁ ? ନା ମନ୍ତ୍ରଣା କୌଶଳରେ ?

ଶିବବର୍ଣ୍ଣ—ତୁମର ମନ୍ତ୍ରଣା କୌଶଳରେ ।

ଗୃଧ୍ର—ଯଦି ଆପଣ ମୋର ମନ୍ତ୍ରଣା ଗ୍ରହଣ କରନ୍ତି, ତାହାହେଲେ ସ୍ୱଦେଶକୁ ଫେରି ଯାନ୍ତୁ, ନଚେତ୍ ଘୋର ବର୍ଷାକାଳରେ, ଏହି ସମକକ୍ଷ ରାଜା ସହିତ ପୁନର୍ବାର ସଂଗ୍ରାମ ହେଲେ, ଏଠାରୁ ସ୍ୱଦେଶକୁ ବାହୁଡ଼ିବା ଅସମ୍ଭବ ହୋଇ ଉଠିବ । ସୁତରାଂ ଏହି ରାଜା ସଙ୍ଗେ ଶୀଘ୍ର ସନ୍ଧି ସ୍ଥାପନ କରନ୍ତୁ । ଏହା କଲେ ଆମମାନଙ୍କର ସୁଖ ସମୃଦ୍ଧି ଓ ସମ୍ମାନ ଅକ୍ଷୁର୍ଣ୍ଣ ରହିବ । ଆମେମାନେ ବର୍ତ୍ତମାନ ଶତ୍ରୁଦୁର୍ଗ ଭାଙ୍ଗି ଜୀତିଲୁଁ

---

ଦୁଇ ପକ୍ଷ ବିନାଶର ରହେ ସମ୍ଭାବନା ।

କରିଅଛୁଁ । ସନ୍ଧି ନକଲେ ଆତ୍ମସମ୍ମାନ ନଷ୍ଟ ହେବଇ ହେବ । ମୋ ମତରେ, ଏହାହିଁ ସତ୍ପରାମର୍ଶ ।

ଯେଉଁ ବ୍ୟକ୍ତି ରାଜାର ସନ୍ତୋଷ କିମ୍ବା କ୍ରୋଧ ପ୍ରତି ଭ୍ରୂକ୍ଷେପ ନକରି ନିର୍ଭୀକଭାବରେ ଧର୍ମ୍ମ-କଥା କହେ ଏବଂ ଅପ୍ରିୟ ହେଲେହେଁ ହିତବାକ୍ୟ ଶୁଣାଏ, ସେହି ଲୋକହିଁ ରାଜାର ପ୍ରକୃତ ସହାୟ ଓ ଉପକାରୀ । ସମକକ୍ଷ ଶତ୍ରୁ ସହିତ ଲଢ଼ାଇ କଲେ, ଜୟ କିମ୍ବା ପରାଜୟର ସ୍ଥିରତା ରହେ ନାହିଁ । ଅତଏବ ଏପରି ସଂଶୟ ସ୍ଥଳରେ ଯୁଦ୍ଧ ନ କରି ସନ୍ଧି କରିବା ବୁଦ୍ଧିମାନ ରାଜାର ଧର୍ମ । ଯାହା ଅନିଶ୍ଚିତ ତାହା କରିବା ଏକାନ୍ତ ଅନୁଚିତ—ଏହା ଆମର ଗୁରୁଙ୍କର ଉପଦେଶ । କେଉଁ ବୁଦ୍ଧିମାନ ରାଜା ନିଜର ବନ୍ଧୁ, ସୈନ୍ୟ, ରାଜ୍ୟ, ମାନ ଓ ପ୍ରାଣକୁ ସମର ସଙ୍କଟରେ ପକାଏ ? ପୁଣି—

'ସମାନ ସମାନେ ହେଲେ ସମର ଘଟନା,
ଦୁଇ ପକ୍ଷ ବିନାଶରେ ଅଛି ସମ୍ଭାବନା;
ସୁନ୍ଦ ଉପସୁନ୍ଦ ନାମେ ଦୁଇ ଦୈତ୍ୟବର,
ସମାନେ ସମାନେ ଯୁଝି ଗଲେ ଯମଘର ।'

ଚିତ୍ରବର୍ଣ୍ଣ—କିପରି ?

ଗୃଧ୍ର—

## ସୁନ୍ଦ ଓ ଉପସୁନ୍ଦ

ପୂର୍ବ କାଳରେ ସୁନ୍ଦ ଓ ଉପସୁନ୍ଦ ନାମରେ ଦୁଇଜଣ ମହାପ୍ରଭାବଶାଳୀ ଦୈତ୍ୟ ତ୍ରିଲୋକଆଧିପତ୍ୟ କାମନାରେ ଘୋର ତପସ୍ୟା କରି ଭଗବାନ ଚନ୍ଦ୍ରଶେଖରଙ୍କର ଆରାଧନା କରୁଥିଲେ ।

ସେମାନଙ୍କର କଠୋର ତପସ୍ୟା ଓ ଆରାଧନାରେ ପରିତୁଷ୍ଟ ହୋଇ ମହାଦେବ ସେମାନଙ୍କୁ ବର ପ୍ରାର୍ଥନା କରିବାର କାରଣ ଆଦେଶ କଲେ । ଦୈତ୍ୟ-ଦ୍ୱୟ ତ୍ରିଭୁବନ-ଆଧିପତ୍ୟ ପ୍ରାର୍ଥନା କରିବାକୁ ଉଦ୍ୟତ ହୋଇଅଛନ୍ତି, ଏପରି ସମୟରେ ସରସ୍ୱତୀ ସେମାନଙ୍କ କଣ୍ଠରେ ଅଧିଷ୍ଠାନ କରି ଉକ୍ତ ବର ମଗାଇ ଦେଲେ ନାହିଁ— ଅନ୍ୟ ପ୍ରାର୍ଥନା କରାଇଲେ ।

ଦୈତ୍ୟମାନେ କହିଲେ, "ହେ ପରମେଶ୍ୱର ! ଆପଣ ଯଦି ପ୍ରସନ୍ନ ହୋଇଥାନ୍ତି, ତାହାହେଲେ ଆପଣଙ୍କର ପ୍ରାଣେଶ୍ୱରୀ ପାର୍ବତୀଙ୍କୁ ଆମମାନଙ୍କ ହସ୍ତରେ ଅର୍ପଣ କରନ୍ତୁ ।" ଏହି ପ୍ରାର୍ଥନାରେ ମହାଦେବ ଅତିଶୟ କ୍ରୁଦ୍ଧ ହୋଇ ଉଠିଲେ । କିନ୍ତୁ ସେ ତ ଅଙ୍ଗୀକାର କରି ସାରିଛନ୍ତି, ବର ନ ଦେଇ ରହିବେ କିପରି ? ଅତଏବ ଅଗତ୍ୟା ଦୁର୍ବୁଦ୍ଧି ଦୈତ୍ୟ ଦୁହିଁଙ୍କି ପାର୍ବତୀ ପ୍ରଦାନ କଲେ ।

ପରେ ସୃଷ୍ଟି ସଂହାରୀ ପାପାତ୍ମା ସେହି ଦୁଇ ଦୈତ୍ୟ ଭଗବତୀ ପାର୍ବତୀଙ୍କ ରୂପ ଲାବଣ୍ୟରେ ଏପରି ମୋହିତ ଓ ଅଧୀରଚିତ୍ତ ହୋଇ ପଡ଼ିଲେ ଯେ, ତାହାଙ୍କୁ ନିଜର କରି ନେବା ନିମନ୍ତେ ଦୁହେଁ ପରସ୍ପର ସହିତ ଭୟଙ୍କର କଳହ ଆରମ୍ଭ କରି ବସିଲେ । ଶେଷରେ ଉଭୟେ ସ୍ଥିର କଲେ, ଏହି ବିବାଦଭଞ୍ଜନ ପାଇଁ କୌଣସି ବ୍ୟକ୍ତିକୁ ମଧ୍ୟସ୍ଥ ମାନିବେ ଏବଂ ତାହାର ବିଚାର ଅନୁସାରେ ଚାଲିବେ ।

ଠିକ୍ ଏତିକିବେଳେ ଭଗବାନ୍ ମହାଦେବ ବୃଦ୍ଧ ବ୍ରାହ୍ମଣ ରୂପଧରି ସୁନ୍ଦ ଓ ଉପସୁନ୍ଦଙ୍କ ନିକଟରେ ଯାଇ ପହଞ୍ଚିଗଲେ । ଦୁହେଁ ସେହି ବ୍ରାହ୍ମଣଙ୍କୁ କହିଲେ, "ଆମେମାନେ ତପୋବଳରେ ଏହି ସୁନ୍ଦରୀଙ୍କୁ ଲାଭ କରିଅଛୁଁ । ଆମ ଦୁହିଁଙ୍କ ମଧ୍ୟରେ କିଏ ଏହାଙ୍କୁ ଭୋଗ କରିବ, ତାହା ବିଚାର କରି କହନ୍ତୁ । ଏ ବିବାଦରେ ଆପଣହିଁ ମଧ୍ୟସ୍ଥ ।"

ବ୍ରାହ୍ମଣ କହିଲେ, "ଜ୍ଞାନ-ଗୌରବରେ ବ୍ରାହ୍ମଣ ଏବଂ ଭୁଜ-ବଳରେ କ୍ଷତ୍ରିୟ ପୂଜିତ ହୋଇଥାଏ । ବୈଶ୍ୟ ସମ୍ମାନିତ ହୁଏ ଧନଧାନ୍ୟ ସମ୍ପଦରେ । ଶୂଦ୍ରର ପ୍ରାଧାନ୍ୟ ଦ୍ୱିଜସେବାରେ ନିହିତ । ତୁମେ ଦୁହେଁ କ୍ଷତ୍ରିୟଧର୍ମରେ ଦୀକ୍ଷିତ । ଏଣୁ ପରସ୍ପର ଯୁଦ୍ଧ କର । ଯେ ଜୟୀ ହେବ, ସେ ଏହି ଯୁବତୀଙ୍କୁ ଗ୍ରହଣ କରିବ ।

ଏହି ପ୍ରସ୍ତାବ ଦୈତ୍ୟମାନଙ୍କର ମନକୁ ପାଇଲା । ଉଭୟେ ବ୍ରାହ୍ମଣଙ୍କୁ ଅନେକ ଧନ୍ୟବାଦ ଦେଇ ଦ୍ୱନ୍ଦ୍ୱ ଯୁଦ୍ଧରେ ପ୍ରବୃତ୍ତ ହେଲେ । ଦୈତ୍ୟ ଦୁହେଁ ସମାନ ବଳବାନ୍; ସୁତରାଂ ସେମାନେ ପରସ୍ପରକୁ ସାଂଘାତିକ ଆଘାତ କରି ଏକ ସମୟରେ ନିହତ ହୋଇ ପଡ଼ିଲେ ।

ଏଣୁ କହୁଥିଲି ଯେ, ସମକକ୍ଷ ସଙ୍ଗେ ସନ୍ଧି କରିବା ଶ୍ରେୟସ୍କର ।

---

ଚିତ୍ରବର୍ଣ୍ଣ—ତେବେ ଆଗରୁ ଏ ପରାମର୍ଶ ଦେଲ ନାହିଁ କାହିଁକି ?

ମନ୍ତ୍ରୀ—ଆପଣ କଣ ସେତେବେଳେ ମୋ କଥାର ଶେଷ ପର୍ଯ୍ୟନ୍ତ ଶୁଣିଥିଲେ ? ସେତେବେଳେ ତ ମୋ ମତରେ ଏହି ସଂଗ୍ରାମ ଆରମ୍ଭ ହୋଇ ନ ଥିଲା । ମୋ ବିବେଚନାରେ, ରାଜା ହିରଣ୍ୟଗର୍ଭ ସହିତ ଯୁଦ୍ଧ କରିବା ଉଚିତ ନୁହେଁ । ଏହି ରାଜାଙ୍କର ସଦ୍‌ଗୁଣାବଳୀ ଦୃଷ୍ଟିରେ, ଏହାଙ୍କ ସଙ୍ଗେ ଅବିଳମ୍ବେ ସନ୍ଧି ସ୍ଥାପନ କରିବା ବାଞ୍ଛନୀୟ । କଥିତ ଅଛି—ସତ୍ୟନିଷ୍ଠ, ଧାର୍ମିକ, ଆର୍ଯ୍ୟ, ଅନାର୍ଯ୍ୟ, ପ୍ରବଳ, ଅନେକ ଭାଇ, ବନ୍ଧୁ ଓ ଜ୍ଞାତି ଯାହାର ସହାୟ ଏବଂ ଯେ ବହୁ ଯୁଦ୍ଧରେ ଜୟୀ, ଏହି ସାତ ପ୍ରକାର ଶତ୍ରୁ ସହିତ

ଯୁଦ୍ଧ ନ ଚଳାଇ ସନ୍ଧି କରିବା ବିଧେୟ । କାରଣ ଏମାନଙ୍କ ସଙ୍ଗେ ଯୁଦ୍ଧ କଲେ ନିଜ ପରାଜୟର ଏବଂ ସନ୍ଧି କଲେ ମହୋପକାରର ସମ୍ଭାବନା ।

ସତ୍ୟନିଷ୍ଠ ସର୍ବଦା ନିଜ ସତ୍ୟ ପାଳନ କରେ, କେବେ ହେଲେ ସନ୍ଧିବନ୍ଧନ ଛିନ୍ନ କରେ ନାହିଁ । ପ୍ରାଣ ଗଲେ ହିଁ ଯିବ, ଆର୍ଯ୍ୟ କଦାପି ଅନାର୍ଯ୍ୟ ହୁଏ ନାହିଁ; ସୁତରାଂ ତାହା ସଙ୍ଗେ ସନ୍ଧି ଚିରସ୍ଥାୟୀ ହୋଇଥାଏ । ଯେ ଧାର୍ମିକ, ତାହା ସହିତ ଲଢ଼ାଇ କରିବା ମୂର୍ଖତାର ପରିଚାୟକ । କାରଣ ଧାର୍ମିକ ପ୍ରତି ସମସ୍ତଙ୍କର ସ୍ନେହ ସହାନୁଭୂତି ରହେ । ତାହାକୁ ଆକ୍ରମଣ କରିବା ମାତ୍ରକେ ସମସ୍ତେ ତାହାର ପକ୍ଷ ଧରି ଯୁଦ୍ଧକୁ ଡେଇଁ ପଡ଼ନ୍ତି । ମନେ ରଖନ୍ତୁ, ପ୍ରଜାବତ୍ସଳତା ଓ ଧର୍ମବଳରେ ଧର୍ମପରାୟଣ ରାଜା ଦୁର୍ଜ୍ଜୟ ।

ଅନାର୍ଯ୍ୟକୁ ଅସଭ୍ୟ ବୋଲି ଘୃଣା କରିବା ଏକାନ୍ତ ଅନୁଚିତ । ତାହା ସହିତ ଯୁଦ୍ଧ ବିଗ୍ରହ ନ କରି ସନ୍ଧି କରିବା ରାଜାର ପ୍ରଧାନ କର୍ତ୍ତବ୍ୟ । ଏପରି ସମୟ ଆସିପାରେ ଯେତେବେଳେ ଅନାର୍ଯ୍ୟର ସହାୟତାରେ ଜୀବନ ରକ୍ଷା ହେବ ।

ନିବିଡ଼ ଝାଡ଼ାବୃତ ବଂଶବୃକ୍ଷର ଛେଦନ ଯେପରି କଷ୍ଟସାଧ୍ୟ, ଯାହାର ଅନେକ ଭ୍ରାତା ସହାୟ, ସେହି ବ୍ୟକ୍ତିକୁ ଜୟ କରିବା ସେପରି କଠିନ । ପ୍ରବଳ ଝଡ଼ରେ ପ୍ରତିକୂଳ ଦିଗରେ ବାରିଦମାଳା କେବେ ଯାଏ ନାହିଁ । ସେପରି ଚତୁର ରାଜା କେବେ ପ୍ରବଳ ଲୋକର ବିରୁଦ୍ଧାଚରଣ କରେ ନାହିଁ । ଯେଉଁ ବ୍ୟକ୍ତି ସର୍ବଙ୍କ ପରି ନିଜ

ପ୍ରତାପବଳରେ ଅନେକ ଯୁଦ୍ଧରେ ଜୟଲାଭ କରିଥାଏ, ପ୍ରବଳ ପରାକ୍ରମ ଫଳରେ ସର୍ବଦ ସମସ୍ତେ ଯାହାର ପଦାନତ ଓ ବଶୀଭୂତ, ସେପରି ବ୍ୟକ୍ତି ସହିତ ସନ୍ଧିସ୍ଥାପନ କରିବା ଭଲ ।

ମହାରାଜ ! ଏହି ରାଜା ରାଜହଂସ ସନ୍ଧିର ଯୋଗ୍ୟ ପାତ୍ର, ସନ୍ଧି-ଉପଯୋଗୀ ଅନେକ ଗୁଣରେ ମଣ୍ଡିତ । ଅତଏବ ଏହାଙ୍କ ସଙ୍ଗେ ଯୁଦ୍ଧ ଚଳାନ୍ତୁ ନାହିଁ ।

ଚକ୍ରବାକ କହିଲା—'ଗୂଢ଼ଚର । ସବୁ ବୁଝିପାରିଛ ତ ? ବର୍ତ୍ତମାନ ଯା'ଅ, ପରେ ଆସିବ ।'

ପରେ ହିରଣ୍ୟଗର୍ଭ ଚକ୍ରବାକକୁ କହିଲା, "ମନ୍ତ୍ରୀବର, କେଉଁ ରାଜା ସହିତ ସନ୍ଧି ନ କରି ଯୁଦ୍ଧ କରିବା ଉଚିତ, ତାହା ମୁଁ ଜାଣିବାକୁ ଇଚ୍ଛା କରିଅଛି । ଦୟାକରି ତାହା ବୁଝାଇ ଦିଅ ।"

ମନ୍ତ୍ରୀ —ଯେଉଁମାନଙ୍କ ସହିତ ସନ୍ଧି ନ କରି ଯୁଦ୍ଧ କରିବାକୁ ହେବ, ସେମାନଙ୍କର ବିଷୟ କହୁଅଛି ଶୁଣନ୍ତୁ । ସ୍ଥୂଳତଃ ଯେଉଁ ସ୍ଥଳରେ ଯୁଦ୍ଧ କଲେ ଜୟ ଲାଭର ସମ୍ଭାବନା, ସେପରି ସ୍ଥଳରେହିଁ ସନ୍ଧି ପରିବର୍ତ୍ତେ ଯୁଦ୍ଧ କରିବା ବିଧେୟ । ବାଳ, ବୃଦ୍ଧ, ଦୀର୍ଘରୋଗୀ, ଜ୍ଞାତି-ବହିଷ୍କୃତ, ଭୀରୁ, ଭୀରୁଜନ, ଲୁବ୍ଧ, ଲୁବ୍ଧ-ପରିବୃତ, ବିରକ୍ତ-ପ୍ରକୃତ, ଅତି ବିଷୟସେବକ, ବହୁଚିତ୍ତ ମନ୍ତ୍ର, ଦେବ-ବ୍ରାହ୍ମଣ-ନିନ୍ଦକ, ଦୈବୋପହତକ, ଦୈବପରାୟଣ, ଦୁର୍ଭିକ୍ଷବ୍ୟସନୀ, ବଳବ୍ୟସନୀ, ଅଦେଶସ୍ଥ, ବହୁଶତ୍ରୁ ପ୍ରତ, ଅକାଳସ୍ଥ ଓ ସତ୍ୟ-ଧର୍ମ୍ମ-ପରିଚ୍ୟୁତ— ଏହି ବିଂଶତି-ପ୍ରକାର ନୃପତି ସହିତ ସନ୍ଧି ନ କରି ସଂଗ୍ରାମ କରିବା ଉଚିତ । ଆକ୍ରମଣ କଲେ ଏମାନେ ଅତି ସହଜରେ ପରାସ୍ତ ହୋଇଥାନ୍ତି ।

ବାଳକରାଜାର ବଳବୀର୍ଯ୍ୟ ଅତ୍ୟଳ୍ପ, ବୁଦ୍ଧିବଳ ନହାନ୍ତି କମ୍ । ସେ ଯୁଦ୍ଧର ଫଳାଫଳ ବୁଝିବାକୁ ଏକାନ୍ତ ଅସମର୍ଥ । ଏଣୁ ବନ୍ଧୁବାନ୍ଧବ, ସୈନ୍ୟ ସାମନ୍ତ ଓ ପ୍ରଜାମାନେ ବାଳକରାଜା ପକ୍ଷରେ ଯୁଦ୍ଧ କରିବାକୁ ଅନିଚ୍ଛୁକ ।

ବୃଦ୍ଧ ଓ ଶର ରୋଗୀ ରାଜାମାନଙ୍କର ଶକ୍ତି ଓ ଉତ୍ସାହ ନଥାଏ । ସ୍ୱପକ୍ଷର ଲୋକମାନେ ମଧ୍ୟ ଏ ଦୁଇ ପ୍ରକାର ରାଜାଙ୍କୁ ଆଦୌ ଭୟ କରନ୍ତି ନାହିଁ, ମାନନ୍ତି ନାହିଁ । ସୁତରାଂ ଏମାନେ ଯୁଦ୍ଧରେ ଅନାୟାସରେ ନିଜର ପରାଜୟ ମାନିଥାନ୍ତି ।

ସର୍ବ ଜ୍ଞାତି-ବହିଷ୍କୃତ ନୃପତି ଅକ୍ଳେଶରେ ନଷ୍ଟ ହୋଇଥାଏ । ତାହାର ଜ୍ଞାତିବର୍ଗ ସବୁ ଆତ୍ମସାତ୍ କରି ତାହାରିହିଁ ସର୍ବନାଶ କରନ୍ତି ।

ଭୀରୁ ରାଜା ଯୁଦ୍ଧକ୍ଷେତ୍ରରୁ ପଳାୟନ କରି ଶତ୍ରୁ ହାତରେ ଅନାୟାସରେ ନିହତ ହୋଇଥାଏ ।

ସୈନ୍ୟସାମନ୍ତ ପ୍ରଭୃତି ଯଦି ଭୀରୁ ହୋଇଥାନ୍ତି, ତାହା ହେଲେ ସେମାନେ ଯୁଦ୍ଧ ସମୟରେ ରାଜାଙ୍କୁ ତ୍ୟାଗ କରି ପଳାନ୍ତି ।

ଲୁବ୍‌ଧ ରାଜା ଭୃତ୍ୟମାନଙ୍କୁ ଅର୍ଥଦିଏ ନାହିଁ, ଅତଏବ କେହିହେଲେ ତାହା ପକ୍ଷରେ ଯୁଦ୍ଧ କରିବାକୁ ସ୍ୱୀକୃତ ହୁଅନ୍ତି ନାହିଁ । ଧନ ଲୁବ୍‌ଧ ଅନୁଚରଗଣ ଅର୍ଥଲୋଭରେ ରାଜାର ସର୍ବନାଶ ଘଟାଇ ଥାନ୍ତି ।

ଯେଉଁ ରାଜା ପ୍ରତି ତାହାର ମନ୍ତ୍ରୀ, ପରିଜନ, ସୈନ୍ୟ ସାମନ୍ତ ଓ ପ୍ରଜାଗଣ ନିତାନ୍ତ ବିରକ୍ତ, ସେମାନେ ତାହାକୁ ଯୁଦ୍ଧ କାଳରେ ସାହାଯ୍ୟ କରନ୍ତି ନାହିଁ—ପକ୍ଷାନ୍ତରରେ ପରିହାର କରିଥାନ୍ତି ।

ନିତାନ୍ତ ଇନ୍ଦ୍ରିୟ ସୁଖରେ ଯେ ଆସକ୍ତ, ସେ ବିପକ୍ଷ-ଦ୍ୱାରା ଅତି ସହଜରେ ପରାସ୍ତ ହୋଇଥାଏ । ମନ୍ତ୍ରଣା କାର୍ଯ୍ୟରେ ଯାହାର ଚିତ୍ତ ସ୍ଥିର ନୁହେଁ, ସେପରି ଅବ୍ୟବସ୍ଥିତ ଚିତ୍ତ ନୃପତିର କାର୍ଯ୍ୟରେ ମନ୍ତ୍ରୀମାନେ ଉପେକ୍ଷା ପ୍ରଦର୍ଶନ କରନ୍ତି । ଯେଉଁ ରାଜା ଆରାଧ୍ୟ ଦେବତା ଓ ଉପଦେଷ୍ଟା ବ୍ରାହ୍ମଣଙ୍କ ପ୍ରତି ବିଦ୍ୱେଷ ପ୍ରକାଶ କରେ ଏବଂ ଯାହା ପ୍ରତି ଦୈବ ନିତାନ୍ତ ପ୍ରତିକୂଳ, ସେହି ରାଜା ନିଜ ଅଧର୍ମ ଫଳରେ ନଷ୍ଟ ହୁଏ । ଧର୍ମହିଁ ଜଗତର ପ୍ରଧାନ ଶକ୍ତି ।

କାପୁରୁଷ ରାଜା କେବଳ ଦୈବ ଉପରେ ନିର୍ଭର କରି ନିଶ୍ଚେଷ୍ଟ ରହେ । ଦୈବ ଯୋଗେହିଁ ସମ୍ପଦ କିମ୍ବା ବିପଦ ଆସେ ବୋଲି ଭାବି ସେ ସକଳ ପ୍ରୟାସ ପରିହାର କରେ; ଫଳତଃ ଶତ୍ରୁକର୍ତ୍ତୃକ ନିହତ ହୁଏ ।

ଯେଉଁ ରାଜା ଦୁର୍ଭିକ୍ଷ-ବ୍ୟସନରେ ବୁଡ଼ି ରହେ, ସେ ନିଜେ ଅତିଶୟ ଅବସନ୍ନ ହୋଇ ପଡ଼େ । ଯେଉଁ ରାଜାର ସେନା ମଧ୍ୟରେ ବ୍ୟାଧି, ଅବାଧ୍ୟତା, ଅସନ୍ତୋଷ ଇତ୍ୟାଦି ବିଶୃଙ୍ଖଳା ଘଟେ, ସେ ସାମରିକ ଶକ୍ତି, ଆଶା ଓ ଉତ୍ସାହ ହରାଇ ବସେ । ଏଭଳି ରାଜାର ପରାଜୟ ସୁନିଶ୍ଚିତ ।

ଯେଉଁ ରାଜା ନିଜ ଦୁର୍ଗ ପ୍ରଭୃତି ସୁରକ୍ଷିତ ସ୍ଥାନରୁ ଭ୍ରଷ୍ଟହୋଇ ଅନାବୃତ ସ୍ଥାନରେ ପତିତ ହୁଏ, ସେ ସାମାନ୍ୟ

ଶତ୍ରୁଦ୍ୱାରା ମଧ୍ୟ ପରାଭୂତ ହୁଏ—ଜଳମଗ୍ନ ଗଜେନ୍ଦ୍ର ଯେପରି କ୍ଷୁଦ୍ର କୁମ୍ଭୀରଦ୍ୱାରା ସହଜରେ ଆକ୍ରାନ୍ତ ଓ ଆହତ ହୋଇଥାଏ ।

ଅନେକ ଶତ୍ରୁ ଯେଉଁ ରାଜାକୁ ଚତୁର୍ଦ୍ଦିଗରେ ଘେରି ରହିଥାନ୍ତି, ସେ ବହୁ ଶ୍ୟେନ-ପରିବେଷ୍ଟିତ କପୋତ ତୁଲ୍ୟ, ଆଉ ନିସ୍ତାର ପାଏ ନାହିଁ—ଅତି ଅନାୟାସରେ ଆକ୍ରାନ୍ତ ( ଆକ୍ରମିତ ) ଓ ନିଧନ ପ୍ରାପ୍ତ ହୁଏ ।

ଯେପରି ଦୃଷ୍ଟିହୀନ କାକ ରାତ୍ରିକାଳରେ ପେଚକ ହସ୍ତରେ ପଡ଼ି ଜୀବନ ହରାଏ, ସେପରି ରାଜା ଅକାଳରେ ଅର୍ଥାତ୍ ଦୁଃସମୟରେ ଯୁଦ୍ଧ ଚଳାଇ ଶତ୍ରୁ ହସ୍ତରେ ନିହତ ହୁଏ ।

ସତ୍ୟ-ଧର୍ମ୍ମ-ଚ୍ୟୁତ ନୃପତି କଦାପି ସନ୍ଧି-ବନ୍ଧନ ମାନେ ନାହିଁ । ଅତଏବ ଏପରି ରାଜା ସହିତ ସନ୍ଧି ସ୍ଥାପନ କରିବା ନିଷିଦ୍ଧ ।

ଆହୁରି ଶୁଣନ୍ତୁ । ସନ୍ଧି, ବିଗ୍ରହ, ଯାନ, ଆସନ, ଦ୍ୱୈଧ ଓ ଆଶ୍ରୟ—ଏ ସମସ୍ତଙ୍କୁ ଷଡ଼୍‌ଗୁଣ କହନ୍ତି । କର୍ମ୍ମର ଆରମ୍ଭୋପାୟ, ପୁରୁଷ-ଦ୍ରବ୍ୟ-ସମ୍ପଦ, ଦେଶ-କାଳ-ବିଭାଗ, ବିନିପାତ-ପ୍ରତୀକାର ଓ କାର୍ଯ୍ୟ ସିଦ୍ଧି—ଏ ପାଞ୍ଚୋଟି ମନ୍ତ୍ରଣାର ଅଙ୍ଗ । ଉତ୍ସାହ-ଶକ୍ତି, ମନ୍ତ୍ର-ଶକ୍ତି ଓ ପ୍ରଭୁ-ଶକ୍ତି-ଏ ତିନୋଟିକୁ 'ରାଜଶକ୍ତି' କୁହାଯାଏ । ଜିଗୀଷୁ ନରପତି-ମାନେ ଏହି ସମସ୍ତ ନୀତି ଅନୁସରଣ କରି ମହତ୍ତ୍ୱ ପ୍ରାପ୍ତ ହୁଅନ୍ତି । କାରଣ ଲକ୍ଷ୍ମୀ, ଚପଳା ହେଲେହେଁ, ନୀତିଜ୍ଞ—

ଗଣଙ୍କ ଗୃହରେହିଁ ଆଶ୍ରୟ ନେଇଥାନ୍ତି । କଥିତ ଅଛି— ଯେଉଁ ରାଜାର ଧନ ସମସ୍ତେ ସମଭାବରେ ଭୋଗ କରନ୍ତି, ଯାହାର ସେବାରେ ଅନ୍ତ ଗୂଢ଼ଚରମାନେ ଥାନ୍ତି, ଯାହାର ମନ୍ତ୍ରଣା ଅଭେଦ୍ୟ ଏବଂ ଯାହା ମୁଖରୁ କେବେ ଅପ୍ରିୟ ବଚନ ନିର୍ଗତ ହୁଏ ନାହିଁ, ସେହି ରାଜା ସସାଗରାଧରା ଭୋଗ କରିଥାଏ ।

ମହାରାଜ ! ମନ୍ତ୍ରୀବର ଗୃଧ୍ର ସନ୍ଧି କରିବାକୁ ପରାମର୍ଶ ଦେଇ ଭଲ କରି ଅଛନ୍ତି । କିନ୍ତୁ ରାଜା ଚିତ୍ରବର୍ଣ୍ଣ ଏତେ-ବେଳେ ବିଜୟଦର୍ପରେ ଏପରି ଉନ୍ମତ୍ତ ହୋଇଅଛି ଯେ, ଏହି ସନ୍ଧି ପ୍ରସ୍ତାବ କଦାଚ ଗ୍ରହଣ କରିବ ନାହିଁ । ଅତଏବ ଆମମାନଙ୍କର ବନ୍ଧୁ ସିଂହଳ-ରାଜ 'ମହାବଳ' ନାମକ ସାରସ ଯେପରି ଚିତ୍ରବର୍ଣ୍ଣର ରାଜ୍ୟ ଜମ୍ବୁଦ୍ୱୀପ ଆକ୍ରମଣ କରନ୍ତି, ତାହାର ବ୍ୟବସ୍ଥା କରିବା ବର୍ତ୍ତମାନ ଆମମାନଙ୍କର ପ୍ରଧାନ କର୍ତ୍ତବ୍ୟ । ଯୁଦ୍ଧରେ ଯେତେବେଳେ ଶତ୍ରୁପକ୍ଷ ପ୍ରବଳ ହୋଇ ରାଜାକୁ ପୀଡ଼ାଦିଏ, ଠିକ୍ ସେହି ସମୟରେ ସେହି ଶତ୍ରୁ ସହିତ ସନ୍ଧି କରିବା ବୁଦ୍ଧିମାନର କାର୍ଯ୍ୟ ନୁହେ । କାରଣ ଠିକ୍ ସେତିକବେଳେ ସନ୍ଧି କରିବାକୁ ଗଲେ, ଶତ୍ରୁ ଯାହା କିଛି ଲୋଡ଼େ ତାହାକୁ ତାହା ଦେବାକୁ ହୋଇଥାଏ । ଅତଏବ ସେହି ସମୟରେ ବିବିଧ ଉପାୟ-ଦ୍ୱାରା ସନ୍ଧି ସ୍ଥାପନରେ କାଳ ବିଳମ୍ବ କରିବା ଦରକାର ଏବଂ ସେହି ଅବସରରେ ସୁଦୃଢ଼ କୌଶଳ ପ୍ରୟୋଗ କରି ଶତ୍ରୁକୁ ହୁଦା ନିଜପରି ବିପାକରେ ପକାଇବାକୁ ହେବ । ଯେପରି ଦୁଇ ଖଣ୍ଡ ଧାତୁ ଅଗ୍ନିତାପରେ ତୁଲ୍ୟରୂପେ

ବିଗଳିତ ହେଲେ ପରସ୍ପର ସହ ଠିକ୍ ମିଳିତ ହୋଇଯାଏ, ସେପରି ଉଭୟ ପକ୍ଷ ସମଶକ୍ତିବରେ ବିପଦଗ୍ରସ୍ତ ହୋଇ ପଡ଼ିଲେ ସନ୍ଧିସୂତ୍ରରେ ଆବଦ୍ଧ ହୋଇଥାନ୍ତି ।

ରାଜା ଏହି ପ୍ରସ୍ତାବରେ ସମ୍ମତ ହେଲେ । ସେ 'ବିଚିତ୍ର' ନାମା ବକକୁ ଖଣ୍ଡିଏ ଗୁପ୍ତ ପତ୍ର ଦେଇ ସିଂହଳ ଦ୍ୱୀପକୁ ପ୍ରେରଣ କଲେ । ପରେ ଗୁପ୍ତଚର ପୁନର୍ବାର ଆସି ରାଜାକୁ ଜଣାଇଲା, "ମହାରାଜ ଶତ୍ରୁମାନେ ଯେଉଁ ପରାମର୍ଶ କରିଛନ୍ତି, ତାହା ଶୁଣନ୍ତୁ । ସେଠାରେ ଗୃଧ୍ର ମନ୍ତ୍ରୀ ରାଜା ଚିତ୍ରବର୍ଣ୍ଣଙ୍କୁ କହିଲେ, 'ମହାରାଜ ! ମେଘବର୍ଣ୍ଣକାକ ଶତ୍ରୁମାନଙ୍କ ନିକଟରେ ଅନେକ ଦିନ କଟାଇ ଥିଲେ । ସୁତରାଂ ରାଜା ହିରଣ୍ୟଗର୍ଭ ସନ୍ଧିର ଉପଯୁକ୍ତ ପାତ୍ର କି ନା ସେ କହି ପାରିବେ । ଚିତ୍ରବର୍ଣ୍ଣ ସେହିକ୍ଷଣି ମେଘବର୍ଣ୍ଣଙ୍କୁ ଡକାଇ, ଆପଣଙ୍କର ଓ ମନ୍ତ୍ରୀ ଚକ୍ରବାକଙ୍କର ସ୍ୱଭାବ ଓ ଚରିତ୍ର ସମ୍ବନ୍ଧରେ ପ୍ରଶ୍ନକଲେ । ଉତ୍ତରରେ ମେଘବର୍ଣ୍ଣ କହିଲେ ଯେ, ରାଜା ହିରଣ୍ୟଗର୍ଭ ଯୁଧିଷ୍ଠିରଙ୍କ ପରି ମହାତ୍ମା ଓ ସତ୍ୟବାଦୀ ଏବଂ ଚକ୍ରବାକଙ୍କ ଭଳି ମନ୍ତ୍ରୀ ଜଗତରେ ବିରଳ ।'

ଚିତ୍ରବର୍ଣ୍ଣ ପଚାରିଲେ, 'ତାହାହେଲେ ତୁମେ କିପରି ସେମାନଙ୍କୁ ବଞ୍ଚିତ କରିବାକୁ ସମର୍ଥ ହୋଇଥିଲ ?' ମେଘବର୍ଣ୍ଣ ଅଳ୍ପ ହସି ଦେଇ କହିଲେ, 'ଯେଉଁ ଲୋକ ସମ୍ପୂର୍ଣ୍ଣ ସରଳ ପ୍ରାଣରେ ବିଶ୍ୱାସ କରେ, ତାହାକୁ ଠକିବା ଅତି ସହଜ—ଏ କାର୍ଯ୍ୟରେ ବୁଦ୍ଧିର ପରିଚୟ ମିଳେ ନାହିଁ । ପ୍ରେମ-ବନ୍ଧନ ହୋଇ କୋଳରେ ଶୋଇ-ଥିବା ବ୍ୟକ୍ତିକୁ ହତ୍ୟା କରିବା କଣ ପୌରୁଷର ପରିଚୟକ ? ପ୍ରଥମ ଦିନ ଦେଖିବା କ୍ଷଣି ମନ୍ତ୍ରୀ ମୋର ଦୁରଭିସନ୍ଧି ବୁଝିପାରିଲେ । କିନ୍ତୁ ରାଜା ହିରଣ୍ୟଗର୍ଭ ତ ଅତ୍ୟନ୍ତ ସଦାଶୟ, ଏଣୁ ତାହାଙ୍କୁ ମୁଁ,

ସହଜରେ ପ୍ରତାରିତ କରି ପାରିଅଛୁ । ସମସ୍ତଙ୍କୁ ଆତ୍ମତୁଲ୍ୟ ମନେ କରି ଯେଉଁ ସାଧୁ ବ୍ୟକ୍ତି ଧୂର୍ତ୍ତ ଲୋକର କଥାରେ ବିଶ୍ୱାସ ସ୍ଥାପନ କରନ୍ତି, ସେ ଗୌତମାରଣ୍ୟର ସରଳଚିତ୍ତ ବ୍ରାହ୍ମଣ ପରି ପ୍ରତାରିତ ହୋଇଥାନ୍ତି ।"

ଡାଗବର୍ଣ୍ଣ—କପରି ?

ମେଘବର୍ଣ୍ଣ—

## ବ୍ରାହ୍ମଣ, ଛାଗ ଓ ତିନିଧୂର୍ତ୍ତ

ଗୌତମାରଣ୍ୟରେ ଜଣେ ବ୍ରାହ୍ମଣ ଥରେ ଗୋଟାଏ ଯଜ୍ଞ ଆରମ୍ଭ କରିଥିଲେ । ସେ ନିକଟସ୍ଥ ଏକ ଗ୍ରାମକୁ ଯାଇ ଯାଗ ନିମିତ୍ତ ଗୋଟିଏ ଛାଗ କିଣି ସ୍କନ୍ଧରେ ବହନ କରି ଆଣୁଥିଲେ, ଏପରି ସମୟରେ ତିନି ଜଣ ଧୂର୍ତ୍ତ ତାଙ୍କୁ ଦେଖି ପାରିଲେ । ସେମାନେ ପରସ୍ପର ପରାମର୍ଶରେ ସ୍ଥିର କଲେ ଯେ, କୌଣସି କୌଶଳରେ ବ୍ରାହ୍ମଣ ନିକଟରୁ ଛାଗଟି ନେଇ ଖାଇବେ । ତିନିହେଁ ଏକ ଏକ କ୍ରୋଶ ବ୍ୟବଧାନରେ ପ୍ରାନ୍ତରବର୍ତ୍ତୀ ବୃକ୍ଷ ମୂଳରେ ଉକ୍ତ ବ୍ରାହ୍ମଣଙ୍କର ଆଗମନ-ମାର୍ଗରେ ବସି ରହିଲେ ।

ବ୍ରାହ୍ମଣଙ୍କୁ ଦେଖି ଜଣେ ଧୂର୍ତ୍ତ କହିଲା, 'ଆପଣ ଗୋଟିଏ କୁକୁରକୁ କାନ୍ଧରେ ବୋହି ନେଉଛନ୍ତି କାହିଁକି ?' ବ୍ରାହ୍ମଣ ବିସ୍ମିତ ହୋଇ ଉତ୍ତର କଲେ ଯେ, ଜନ୍ତୁଟି ଯାଗ-ଛାଗ, କୁକୁର ନୁହେ ।

ବ୍ରାହ୍ମଣ ଏକ କ୍ରୋଶ ପଥ ଅତିକ୍ରମ କରିବା ପରେ, ଦ୍ୱିତୀୟ ଧୂର୍ତ୍ତ ବି ତାଙ୍କୁ ସେପରି କହିଲା । ତାହା ଶୁଣି ବ୍ରାହ୍ମଣ ଛେଳିଟିକୁ ତଳକୁ ଓହ୍ଲାଇ ବାରମ୍ବାର ନିରୀକ୍ଷଣ କରିବାକୁ ଲାଗିଲେ । ପୁଣି

ସ୍କନ୍ଧରେ ନେଇ ଚାଲିଲେ । ହିଂସ୍ର ଧୂର୍ତ୍ତର କଥା ଶୁଣିବାକ୍ଷଣି, ବ୍ରାହ୍ମଣଙ୍କର ସରଳ ଚିତ୍ତ ସନ୍ଦେହ-ଦୋଳାରେ ବିଚଳିତ ହେଲା । କାରଣ, ଖଳ ଲୋକର ମଧୁର ବଚନରେ ସାଧୁ ବ୍ୟକ୍ତିର ବୁଦ୍ଧି ମଧ୍ୟ ବିଚଳିତ ହୋଇ ପଡ଼େ । ସେହି କଥାରେ, ଯେ ବିଶ୍ୱାସ କରେ, ସେ 'ଚିତ୍ରକର୍ଣ୍ଣ' ଉଷ୍ଟ୍ର ପରି ଦୁର୍ଗତି ଭୋଗେ ।

ଚିତ୍ରବର୍ଣ୍ଣ—କିପରି ?

ମେଘବର୍ଣ୍ଣ—

## ସିଂହ, କାକ, ବ୍ୟାଘ୍ର, ଶୃଗାଳ ଓ ଉଷ୍ଟ୍ର

କୌଣସି ଏକ ଅରଣ୍ୟରେ 'ମଦୋତ୍କଟ' ବୋଲି ଗୋଟିଏ ସିଂହ ଥିଲା । କାକ, ବ୍ୟାଘ୍ର ଓ ଶୃଗାଳ ଏ ତିନିହେଁ ତାହାର ବିଶ୍ୱସ୍ତ ଅନୁଚର । ଦିନେ ସେମାନେ ଭ୍ରମଣ କରୁ କରୁ ଯୂଥଭ୍ରଷ୍ଟ ଗୋଟିଏ ଉଷ୍ଟ୍ରକୁ ଦେଖି ପଚାରିଲେ, 'ତୁମେ କେଉଁଠାରୁ ଆସୁଛ ?' ଉଷ୍ଟ୍ର ସେମାନଙ୍କୁ ଆତ୍ମବୃତ୍ତାନ୍ତ ଜଣାଇଲା ।

ପରେ ତିନି ଜଣ ଅନୁଚର ଉଷ୍ଟ୍ରକୁ ମିଷ୍ଟ କଥାରେ ବଶ କରି ତାହାକୁ ସଙ୍ଗେ ନେଇ ସିଂହ ନିକଟରେ ପହଞ୍ଚିଲେ । ସିଂହ ଉଟକୁ ଅଭୟ ଦେଇ ଭୃତ୍ୟ ପଦରେ ନିଯୁକ୍ତ କଲା । ସେ ଦିନଠାରୁ ଉଟର ନାମ ରଖାଗଲା 'ଚିତ୍ରକର୍ଣ୍ଣ' ।

ଏପରି କେତେକ ଦିନ ଚାଲିଗଲା । ଦିନେ ସିଂହ ଅତ୍ୟନ୍ତ ପୀଡ଼ିତ ହୋଇ ପଡ଼ିବାରୁ ଏବଂ ସେତେବେଳେ ଘୋର ବୃଷ୍ଟି ହେବାରୁ, ସେମାନେ ସମସ୍ତେ କିଛି ଆହାର ନ ପାଇ ବ୍ୟାକୁଳ

ହେଲେ । କାକ, ବ୍ୟାଘ୍ର ଓ ଶୃଗାଳ ମନ୍ତ୍ରଣା କଲେ, "ଏଇ କଣ୍ଟକ-ଭୋଗୀ ଅସଭ୍ୟ ଜନ୍ତୁଦ୍ୱାରା ଆମର କି ଉପକାର ହେବ ? ଏହାଙ୍କୁ ରାଜା ଯେପରି ସଂହାର କରନ୍ତି, ତାହାର ଉପାୟ ସ୍ଥିର କରିବା ଉଚିତ ।" ବ୍ୟାଘ କହିଲା—'ସିଂହ ଓଟକୁ ତ ଅଭୟ ଦାନ କରିଛନ୍ତି, ତାହାଙ୍କୁ ବଧ କରିବେ କପରି?'

କାକ କହିଲା, "ରାଜା ବର୍ତ୍ତମାନ ରୋଗ ଓ କ୍ଷୁଧାରେ କ୍ଷୀଣ ହୋଇ ପଡ଼ିଛନ୍ତି । ଅତଏବ ପାପ କରିବାକୁ କେବେ କୁଣ୍ଠିତ ହେବେ ନାହିଁ । ରୋଗ, କ୍ଷୁଧା ଇତ୍ୟାଦି ଯନ୍ତ୍ରଣାରେ ନିତାନ୍ତ ଅବସନ୍ନ ହୋଇ ପଡ଼ିଲେ, ଲୋକେ ଦୟା ଧର୍ମ ଭୁଲି ଯାଇ ସକଳ ପ୍ରକାର ଦୁଷ୍କର୍ମ କରିପାରନ୍ତି । ତୁମେମାନେ ଜାଣ, କ୍ଷୁଧାର୍ତ୍ତ ମାତା ନିଜ ପୁତ୍ରକୁ ବି ପରିହାର କରିପାରେ । କ୍ଷୁଧାତୁର ସର୍ପୀ ନିଜର ଅଣ୍ଡା ବି ଭକ୍ଷଣ କରିପାରେ । ପ୍ରମତ୍ତ, ଉନ୍ମତ୍ତ, ମତ୍ତ, ବୁଭୁକ୍ଷିତ, ଭୟଯୁକ୍ତ, ପୀଡ଼ିତ, କାମୁକ, ଲୁବ୍‌ଧ ଓ ଶ୍ରାନ୍ତ—ଏପରି ଲୋକଙ୍କ ମନରେ କେବେହେଲେ ଧର୍ମାଧର୍ମ ବିବେଚନା ଉଦିତ ହୁଏ ନାହିଁ ।"

ସେମାନେ ତିନି ଜଣ ସିଂହ ନିକଟକୁ ଗଲେ । ସିଂହ ଖାଦ୍ୟ ଲୋଡ଼ିବାରୁ, କାକ ଜଣାଇଲା ଯେ, ବହୁତ ଚେଷ୍ଟା ସତ୍ତ୍ୱେ ଆହାର କିଛି ମିଳିଲା ନାହିଁ । ସିଂହ ପଚାରିଲା, 'ତେବେ ବର୍ତ୍ତମାନ ଜୀବନ-ଧାରଣର ଉପାୟ କଣ ?'

କାକ—ଆପଣ ସ୍ୱେଚ୍ଛାଧୀନ ଖାଦ୍ୟ ତ୍ୟାଗ କରି ଏପରି ଯନ୍ତ୍ରଣା ସହ୍ୟ କରୁଛନ୍ତି କାହିଁକି ?

ସିଂହ—ଏଠାରେ ସ୍ୱେଚ୍ଛାଧୀନ ଆହାର ଅଛି କଣ ?

କାକ ସିଂହର କାନରେ କହିଲା,—'ଶଙ୍କୁକର୍ଣ୍ଣ' ।

ତାହା ଶୁଣି ସିଂହ ଭୂମି ସ୍ପର୍ଶ କରି ନିଜ କର୍ଣ୍ଣରେ ହାତ

ଦେଇ କହିଲା, 'ଛି, ଛି, ଏହା କଣ ସମ୍ଭବ ? ମୁଁ ସେ ଓଟକୁ ଅଭୟ ଦାନ କରିଅଛି । ଧର୍ମଶାସ୍ତ୍ର ଅନୁସାରେ ଜଗତରେ ଅଭୟ-ପ୍ରଦାନ ହେଉଛି ସର୍ବପ୍ରଧାନ ଦାନ, ମହାଦାନ । ଅଭୟଦାନ ନିକଟରେ ଭୂ-ଦାନ, ଗୋ-ଦାନ, ଅନ୍ନ-ଦାନ ଓ ସ୍ୱର୍ଣ୍ଣ-ଦାନ କିଛି ନୁହେ । ଅଶ୍ୱମେଧ ଯଜ୍ଞରେ ସକଳ ମନୋରଥ ସିଦ୍ଧ ହୁଏ । ଯେଉଁ ବ୍ୟକ୍ତି ଶରଣାଗତର ଜୀବନରକ୍ଷା କରେ, ସେ ଅଶ୍ୱମେଧ ଯାଗର ସମ୍ପୂର୍ଣ୍ଣ ଫଳ ପ୍ରାପ୍ତ ହୋଇଥାଏ ।'

କାକ—ମହାରାଜ, ତାହାକୁ ବଧ କରିବା ଆପଣଙ୍କର ଅବଶ୍ୟ ଉଚିତ ନୁହେ । କିନ୍ତୁ ଓଟ ଯଦି ପ୍ରଭୁଙ୍କୁ ନିଜ ଦେହ ଦାନ କରିବାକୁ ସ୍ୱୀକୃତ ହୁଏ ?

ସିଂହ ନିରୁତ୍ତର ରହିଲା । କାକ ଷଡ଼ଯନ୍ତ୍ରର ସୁଯୋଗ ପାଇଲା । ସେ ପ୍ରସ୍ଥାନ କରି କିଛି ସମୟପରେ ଅନ୍ୟ ଅନୁଚରମାନଙ୍କୁ ସଙ୍ଗରେ ଧରି ରାଜା ନିକଟରେ ପୁଣି ଉପସ୍ଥିତ ହେଲା । ସମସ୍ତଙ୍କ ଉପସ୍ଥିତିରେ ସେ ସିଂହକୁ ଜଣାଇଲା, 'ମହାରାଜ ! ବହୁ ପରିଶ୍ରମ ସହ ଆହାର ଖୋଜି ବୁଲିଲୁଁ, କିନ୍ତୁ ପାଇଲୁଁ ନାହିଁ । ଆପଣ ଅନାହାରରେ ଅବସନ୍ନ ହୋଇଅଛନ୍ତି । ଏଣୁ ମୋତେ ଖାଇ ପ୍ରାଣଧାରଣ କରନ୍ତୁ । କାରଣ ରାଜା ଏକା ରାଜ୍ୟର ମୂଳ, ରାଜା ବ୍ୟତୀତ ସକଳ ପ୍ରଜାଙ୍କ ନଷ୍ଟ ହୋଇଥାଏ । ବୃକ୍ଷର ମୂଳଭାଗ ନଷ୍ଟ ହେଲେ, ଶାଖା, ପତ୍ର, ଫଳ ଓ ପୁଷ୍ପ ଜୀବିତ ରହେ ନାହିଁ ।'

ତଥାପି ସିଂହ କାକକୁ ସଂହାର କରିବାକୁ ଉଦ୍ୟତ ହେଲା ନାହିଁ । ପରେ ଶୃଗାଳ ମଧ୍ୟ ନିଜ ଶରୀରଦାନର ପ୍ରସ୍ତାବ କରିବାରୁ

ସିଂହ ସେଥିରେ ଅସ୍ୱୀକୃତ ହେଲା । ବ୍ୟାଘ୍ର ମଧ୍ୟ ନିଜ ଦେହ ଯାଚିଲା । ତାହାର ପ୍ରସ୍ତାବରେ ମଧ୍ୟ ସିଂହ ସମ୍ମତ ହେଲା ନାହିଁ ।

ଏହି ପ୍ରସ୍ତାବ ସତ୍ତ୍ୱେ ସିଂହ ସେମାନଙ୍କୁ ବଧ କରିବାକୁ ମନ ନ ବଳାଇବାରୁ, ଓଟବର୍ଣ୍ଣର ମନରେ ସମ୍ପୂର୍ଣ୍ଣ ବିଶ୍ୱାସ ଜନ୍ମିଲା ଯେ, ତାହାକୁ ବି ସିଂହ ବଧ କରିବ ନାହିଁ । ସେ ନିଜ ଦେହ ଦାନ କରିବାକୁ ପ୍ରସ୍ତାବ କରିବା ମାତ୍ରକେ, ସିଂହ ତାହାର ଉଦର ବିଦୀର୍ଣ୍ଣ କରି ପକାଇଲା । ସମସ୍ତେ ଆନନ୍ଦରେ ଓଟ ମାଂସ ଖାଇ କ୍ଷୁଧା ନିବାରଣ କଲେ ।

———

ମେଘବର୍ଣ୍ଣ—ଅନନ୍ତର ସେହି ବ୍ରାହ୍ମଣ ତୃତୀୟ ଧୂର୍ତ୍ତ ମୁଖରୁ ବି ସେହି କଥା ଶୁଣି ସ୍ଥିର କଲେ, ସେ ଭ୍ରମବଶତଃ ଶ୍ୱାନକୁ ଛାଗ ଜ୍ଞାନ କରିଛନ୍ତି । ସେ ତତ୍କ୍ଷଣାତ୍ ଛାଗଟିକୁ ଫିଙ୍ଗି ସ୍ନାନକରି ଘରକୁ ଫେରିଲେ । ଏଣେ ଧୂର୍ତ୍ତମାନେ ଛାଗ ମାରି ମାଂସ ଖାଇ ଆନନ୍ଦରେ ନାଚିଲେ । ଏଣୁ ମୁଁ କହୁଛି ଯେ, ଯେଉଁ ସାଧୁବ୍ୟକ୍ତି ସମସ୍ତଙ୍କୁ ନିଜ ପରି ସାଧୁ ମନେ କରି ଧୂର୍ତ୍ତ କଥାରେ ଆସ୍ଥା ରଖେ, ସେ ନିଃସନ୍ଦେହରେ ପ୍ରବଞ୍ଚିତ ହୋଇଥାଏ ।

ଚିତ୍ରବର୍ଣ୍ଣ— ତୁମେ ଶତ୍ରୁକୁ ଭୁଲାଇ ଚତୁରତାର ପରିଚୟ ଦେଇଅଛ ।

ମେଘବର୍ଣ୍ଣ—ମହାରାଜ, ପ୍ରଭୁର କମ୍ପା ନିଜର କାର୍ଯ୍ୟ ସିଦ୍ଧି ପାଇଁ ସବୁ କରାଯାଇପାରେ । ଲୋକେ ମୁଣ୍ଡରେ କାଠ ବୋହି ଶେଷରେ ଜାଳିଥାନ୍ତି । ନଦୀସ୍ରୋତ ତୀରସ୍ଥିତ ବୃକ୍ଷର ମୂଳଦେଶ ପ୍ରଥମରେ ଧୌତ କରେ ଏବଂ ଶେଷରେ ସେହି ବୃକ୍ଷକୁ ସମୂଳ ଉତ୍ପାଟିତ କରିଥାଏ । ବୁଦ୍ଧିମାନ୍ ବ୍ୟକ୍ତି ନିଜ କାର୍ଯ୍ୟସିଦ୍ଧି କଲେ ଶତ୍ରୁକୁ ବି ନିଜ ପୃଷ୍ଠରେ ବହନ କରେ । ଥରେ ଗୋଟିଏ ବୃଦ୍ଧ ସର୍ପ ଭେକମାନଙ୍କୁ ପିଠିରେ ବସାଇ ସମସ୍ତଙ୍କୁ ଉଦରସ୍ଥ କରିଥିଲା ।

ଚିତ୍ରବର୍ଣ୍ଣ—କିପରି ?

ମେଘବର୍ଣ୍ଣ—

## ବୃଦ୍ଧସର୍ପ ଓ ମଣ୍ଡୂକ

ଏକ ପୁରାତନ ଉଦ୍ୟାନରେ 'ମନ୍ଦବିଷ' ନାମକ ଗୋଟିଏ ସର୍ପ ଥିଲା । ସେ ନିତାନ୍ତ ଜରାଜୀର୍ଣ୍ଣ ହୋଇଥିବାରୁ ନିଜ ଆହାର ଅନ୍ୱେଷଣ କରି ପାରୁ ନ ଥିଲା । ସେ ଦିନେ ଅନାହାରରେ ସରୋବର ତୀରରେ ପଡ଼ି ରହିଅଛି, ଏପରି ସମୟରେ ଗୋଟିଏ ମଣ୍ଡୂକ ଦୂରରୁ ତାହାକୁ ଦେଖି ପଚାରିଲା, "ତୁମେ ଖାଦ୍ୟ ଖୋଜୁନାହଁ କିଆଁ ?"

ସର୍ପ ଉତ୍ତର କଲା, "ଭଦ୍ର, ପଚାର ନାହିଁ, ଏ ହତଭାଗ୍ୟର କଥା ଶୁଣି କି ଲାଭ ?"

ସର୍ପର ଏହି କଥାରେ ଭେକ ମନରେ ଅତ୍ୟନ୍ତ କୁତୂହଳ ଜାତ ହେଲା । ଆତ୍ମବୃତ୍ତାନ୍ତ ଶୁଣାଇବା କାରଣ ସେ ମନ୍ଦବିଷକୁ ବିଶେଷ ଅନୁରୋଧ କଲା । ସର୍ପ କହିଲା, "ବ୍ରହ୍ମପୁର ନାମକ

ନଗରରେ କୌଣ୍ଡିନ୍ୟ ନାମା ଜଣେ ଶ୍ରୋତ୍ରିୟଙ୍କର ବଂଶବର୍ଦ୍ଧନୀୟ ସର୍ବଗୁଣସମ୍ପନ୍ନ ଏକ ପୁତ୍ର ଥିଲା । ତାହାର ନାମ ସୁଶୀଳ । ଦିନେ ମୁଁ ସୁଶୀଳକୁ ନଷ୍ଟ ର ଘରରେ ଦଂଶନ କଲି । ଏହା ମୋ'ର ଦୁରଦୃଷ୍ଟି ଯୋଗେ ଘଟିଲା କହିଲେ ଚଳେ । କୌଣ୍ଡିନ୍ୟ ଏକମାତ୍ର ସନ୍ତାନକୁ ମୃତ ହେବାର ଦେଖି, ତାହାର ଶୋକରେ ମୂର୍ଚ୍ଛିତ ହୋଇ ପଡ଼ିଲେ । ଏହା ଦେଖି ବ୍ରହ୍ମପୁରବାସୀ ତାଙ୍କର ବନ୍ଧୁମାନେ ତାଙ୍କ ନିକଟରେ ଆସି ବସିଲେ । କଥିତ ଅଛି—ଉତ୍ସବ, ବ୍ୟସନ, ଦୁର୍ଭିକ୍ଷ, ଶ୍ମଶାନ, ରାଜଦ୍ୱାର ଓ ଶତ୍ରୁ ଘାତରେ ଯେ ସହାୟ ହୁଏ, ସେ ପ୍ରକୃତ ବନ୍ଧୁ ।

ତାଙ୍କର ବନ୍ଧୁମାନଙ୍କ ମଧ୍ୟରେ କପିଳ ନାମକ ଜନୈକ ସ୍ନାତକ ବ୍ରାହ୍ମଣ କୌଣ୍ଡିନ୍ୟଙ୍କୁ କହିଲେ—"ଦେଖନ୍ତୁ, ତୁମେ ଅତି ଅଜ୍ଞାନ, ପୁତ୍ର ଶୋକରେ ଏତେ ଅଧୀର ହେଉଛ କାହିଁକି ? ଶିଶୁ ଭୂମିଷ୍ଠ ହେବା ମାତ୍ରକେ ଯେପରି ଧାତ୍ରୀ ତାହାକୁ କୋଳରେ ଧରେ, ସେପରି ଜୀବ ଜନ୍ମଗ୍ରହଣ କରିବାକ୍ଷଣି ସର୍ବ ପ୍ରଥମରେ 'ଅନିତ୍ୟତା' ତାହାକୁ ନିଜ କୋଳକୁ ନିଏ, ଶେଷରେ ସେହି ଜୀବର ଜନନୀ ତାହାକୁ କୋଳରେ ବସାଏ । ମୃତ୍ୟୁ ଲାଗି ଏତେ ହାହାକାର କାହିଁକି ? ପୂର୍ବେ ଯେଉଁ ରାଜାମାନେ ବିପୁଳ ସୈନ୍ୟ ସାମନ୍ତଙ୍କୁ ନେଇ ଗର୍ବରେ ସ୍ଫୀତ ହେଉଥିଲେ, ସେମାନେ ବର୍ତ୍ତମାନ କାହାନ୍ତି ? କେଉଁଆଡ଼େ ଗଲେ ସେମାନଙ୍କର ଯାନ ବାହନ, ଧନ ଜନ, ମାନ ଅଭିମାନ ? ଯେଉଁ ଯେଉଁ ସ୍ଥାନରେ ସେମାନେ ବାସ କରୁଥିଲେ, ସେହି ସକଳ ସ୍ଥାନ ଆଜ ସୁଦ୍ଧା କରାଳ ଧ୍ୱଂସର ସାକ୍ଷ୍ୟ ଦେଉଅଛି ସିନା ! ସଗର ପ୍ରଭୃତି ସହସ୍ର ସହସ୍ର ନରପତି ଧରାଧାମରେ ଅବତୀର୍ଣ୍ଣ ହୋଇ ଅଶେଷ ପୁଣ୍ୟ କର୍ମ କରି ପୂଜନୀୟ, ବରଣୀୟ ହୋଇଥିଲେ । କାହାନ୍ତି ସେମାନେ ? ସେମାନଙ୍କର

ପୁଣ୍ୟକର୍ମ ସବୁ ବା କେଉଁଆଡ଼େ ଉଭେଇଗଲା ? ଜଳ ମଧ୍ୟରେ ଆମ କୁମ୍ଭ ବୁଡ଼ାଇ ରଖିଲେ ତାହା ପ୍ରତିମୂହୂର୍ତ୍ତ ଅଲକ୍ଷିତ ଭାବରେ ଆସ୍ତେ ଆସ୍ତେ କ୍ଷୟପ୍ରାପ୍ତ ହୋଇଥାଏ । ସେପରି ଏହି ଶରୀର ମାନବ ଶରୀର ମଧ୍ୟ ପ୍ରତିକ୍ଷଣ ଅଦୃଶ୍ୟଭାବରେ କ୍ରମଶଃ କ୍ଷୟ ପାଇଥାଏ । ଅଜ୍ଞ ଲୋକେ ଏହା ବୁଝି ପାରନ୍ତି ନାହିଁ— ଦେହଟି ସମ୍ପୂର୍ଣ୍ଣରୂପେ ବିନଷ୍ଟ ହୋଇଗଲେ ବୁଝିପାରନ୍ତି ।"

'ଦିନ ପରେ ଦିନ ଯେତିକି ଚାଲିଯାଉଛି, ମରଣକାଳ ସେତିକି ନିକଟବର୍ତ୍ତୀ ହେଉଅଛି । ବଧ ସ୍ଥାନରେ ( ବଧ-ଭୂମିରେ ) ବାଧ୍ୟ ଯେତେ ପଦ ଅଗ୍ରସର ହୁଏ, ତାହା ଆଡ଼କୁ ମୃତ୍ୟୁ ସେତେ ପଦ ଅଗ୍ରସର ହୋଇଥାଏ । କାରଣ ଜୀବନ, ଯୌବନ, ରୂପ, ବିଷୟ, ବିଭବ, ପ୍ରିୟଜନସହବାସ ଇତ୍ୟାଦି ଅନିତ୍ୟ । ଯେଉଁ ଲୋକ ପ୍ରକୃତିର ଏହି ବିଚିତ୍ର ଗତି ବୁଝିପାରେ, ସେ ବିୟୋଗ ଶୋକରେ କେବେ ଅଭିଭୂତ ହୁଏ ନାହିଁ । ଅନନ୍ତ ମହାସାଗରରୂପ ସଂସାରରେ କାଷ୍ଠରୂପ ଜୀବଗଣ ପ୍ରତିମୁହୂର୍ତ୍ତ ଭାସମାନ ହୋଇଥାନ୍ତି । ଯେପରି ମହାସାଗର ବକ୍ଷରେ କାଷ୍ଠ ସହିତ କାଷ୍ଠର ମିଳନ ହୁଏ, ସେପରି ସଂସାର ମଧ୍ୟରେ ଜୀବ ସହିତ ଜୀବର ଦେଖାସାକ୍ଷାତ୍ ହୋଇଥାଏ ଦୈବଘଟନାରେ । ଏହି ମିଳନ କ୍ଷଣିକ ମାତ୍ର— ପୁନର୍ବାର କାଳସ୍ରୋତରେ କିଏ କେଉଁଠାକୁ ଚାଲିଯାଏ ତାହା ବୁଝିବା ଦୁରୂହ । ପଥିକଗଣ ଯେପରି ଏକ ବୃକ୍ଷ ମୂଳରେ ଅଳ୍ପକ୍ଷଣ ମାତ୍ର ବିଶ୍ରାମ କରି ପୁଣି ଚାଲନ୍ତି, ଏହି ଅନିତ୍ୟ ସଂସାରରେ ସେପରି ପ୍ରାଣୀଗଣଙ୍କ ମଧ୍ୟରେ ଅଳ୍ପ ମୁହୂର୍ତ୍ତ ପାଇଁ ପରସ୍ପର ଦେଖାସାକ୍ଷାତ୍, ମିଳାମିଶା, କଥାବାର୍ତ୍ତା ହୋଇଥାଏ ।'

"ଜୀବଦେହ ପଞ୍ଚଭୂତରେ ଗଠିତ ହୋଇ ପୁଣି ପଞ୍ଚଭୂତରେ ମିଶିଯାଏ । ପଞ୍ଚମହାଭୂତର ଏଭଳି ସଂଶ୍ଳେଷ ଓ ବିଶ୍ଳେଷ ପ୍ରକୃତିର ନିୟମ; ସୁତରାଂ ସେଥିରେ ଶୋକ ଦୁଃଖର କୌଣସି କାରଣ ନାହିଁ । ଏହି ମାୟାମୟ ସଂସାରରେ ଯେଉଁ ଲୋକ ଯେତେ ଲୋକଙ୍କ ସହିତ ସ୍ନେହ ମମତାରେ ଆବଦ୍ଧ ହୁଏ, ସେ ନିଜ ଦେହରେ ସେତେ ଶୋକ-ଶଲ୍ୟ ବିଦ୍ଧ କରିଥାଏ । ମନେ ରଖିବାକୁ ହେବ, ନିଜ ଦେହ କଦାପି ନିଜର ନୁହେ । କିଛି ଦିନ ପରେ ତାହାର ବିଲୟ ହେବଇ ହେବ । ତେବେ ପର-ଦେହ ନିଜର ହେବ କିପରି ? କିଛି ଚିରସ୍ଥାୟୀ ନୁହେ—ସବୁ ଯେପରି ଗୋଟାଏ ବିରାଟ ସ୍ୱପ୍ନ । ଜନ୍ମର ସ୍ୱାଭାବିକ ପରିଣାମ ଯେପରି ମରଣ, ମିଳନର ସହଜ ପରିଣାମ ସେପରି ବିରହ । କୁପଥ୍ୟ-ଭୋଜନ ପରି ପ୍ରିୟ-ସହବାସରେ ଆପାତତଃ ଇନ୍ଦ୍ରିୟ ସୁଖ ହୁଏ, ଶେଷରେ କିନ୍ତୁ ସର୍ବନାଶ ଘଟିଥାଏ ।"

"ଖରତର ନଦୀସ୍ରୋତ ଅହୋରାତ୍ର ଅବିରାମ ଗତିରେ ବହିବା ପରି, ଅନନ୍ତକାଳ-ପ୍ରବାହ ଜୀବର ଆୟୁଷକୁ ସଙ୍ଗେ ନେଇ ବରାବର ବହି ଯାଉଅଛି । ସାଧୁ-ମିଳନରେ ଯେଉଁ ସୁଖ ହୁଏ, ବିରହରେ ତାହା ନଷ୍ଟ ହୁଏ । ବିରହରେ ସେହି ସୁଖର ଅବସାନ ହେବା ମାତ୍ରକେ ଦୁଃଖ ଜାତ ହୋଇଥାଏ । ମିଳନ ହେଲେ ସ୍ୱଭାବତଃ ବିଚ୍ଛେଦ ଘଟେ । ସାଧୁ-ବିଚ୍ଛେଦ ରୂପ ଶଲ୍ୟାଘାତରେ ଯେଉଁ ମର୍ମପୀଡ଼ା ହୁଏ, ତାହାର ଆଉ ଔଷଧ ନାହିଁ । ଅତଏବ ଜ୍ଞାନୀ ଲୋକେ ସାଧୁସଙ୍ଗ କାମନା କରନ୍ତି ନାହିଁ । ଶରୀରରେ ବୃଷ୍ଟିଧାରା ପଡ଼ିଲେ ଗାତ୍ର-ବନ୍ଧନ ଯେପରି ଶିଥିଳ ଅବଶ ହୋଇଯାଏ,

ଘୋର ଯମ-ଦଣ୍ଡ ଚିନ୍ତାକଲେ ବିଜ୍ଞବ୍ୟକ୍ତିମାନଙ୍କର ହୃଦୟ ସେପରି ଅବଶ ଅବସନ୍ନ ହୋଇପଡ଼େ ।”

“ଯେଉଁ ଗ୍ରହେ ଯେଉଁ କ୍ଷଣେ ଜନନୀ-ଜଠରେ,
ପ୍ରଥମରେ ଆସି ଜୀବ ଜନ୍ମଲାଭ କରେ;
ତଦବଧି ଚାଲିଥାଏ ସେହୁ ପ୍ରତିକ୍ଷଣେ,
ଅହୋରାତ୍ର ଅବିଶ୍ରାନ୍ତ ଶମନ-ସଦନେ ।”

“ସଂସାରର ପ୍ରକୃତି ଥରେ ବିଚାର କରି ଦେଖିଲେ ବୁଝି ପାରିବ ଯେ, ଶୋକହିଁ ଅଜ୍ଞାନର ପ୍ରପଞ୍ଚ । ବିଚ୍ଛେଦହିଁ ଯଦି ଶୋକର କାରଣ ବୋଲି ଧରାଯାଏ, ତାହାହେଲେ ମନେ ରଖିବାକୁ ହେବ, ଶୋକର ଆଉ ଅନ୍ତ ନାହିଁ—ତାହା ବରାବର ବୃଦ୍ଧି ପାଏ । କାରଣ, ଏହି ସଂସାରରେ ପ୍ରତି ମୁହୂର୍ତ୍ତ ଯେକୌଣସି ପ୍ରିୟ ପଦାର୍ଥ ସହିତ ବିଚ୍ଛେଦ ଘଟିଥାଏ । ଏକମାତ୍ର—ଅଜ୍ଞାନହିଁ ଶୋକର ପ୍ରଧାନ କାରଣ । ଅଜ୍ଞାନ ବିନାଶରେ ଶୋକ ନିବାରଣ ହୁଏ । ତତ୍ତ୍ୱଜ୍ଞାନୀମାନେ ସହସ୍ର ସହସ୍ର ବିଚ୍ଛେଦରେ ବି ଶୋକାଧୀନ ହୁଅନ୍ତି ନାହିଁ । ଅତଏବ ଭାଇ ! ଆତ୍ମଜ୍ଞାନର ଅନୁସନ୍ଧାନ କର, ଶୋକ ତ୍ୟାଗ କର । ମାନବ-ହୃଦୟରେ ପ୍ରତିମୁହୂର୍ତ୍ତ ଅତର୍କିତ ଭାବରେ ଶୋକଶଲ୍ୟ ବିଦ୍ଧ ହୋଇଥାଏ । ବୈରାଗ୍ୟହିଁ ଏହି ମର୍ମ-ଭେଦୀ ପ୍ରହାରର ଏକମାତ୍ର ମହୌଷଧ, ଯାହାର ସେବନରେ ସକଳ ପ୍ରକାର ଯନ୍ତ୍ରଣା ଦୂର ହୁଏ ।”

କପିଳଙ୍କର ଏହି ସମସ୍ତ ଉପଦେଶରେ କୌଣ୍ଡିନ୍ୟଙ୍କର ଚୈତନ୍ୟୋଦୟ ହେଲା । ସେ ଗାତ୍ରୋତ୍ଥାନ କରି କହିଲେ— ‘ଗୃହସ୍ଥାଶ୍ରମ ଘୋର ନରକତୁଲ୍ୟ—ଏଠାରେ ରହି ଲାଭ ବା କଣ ? ଗୃହତ୍ୟାଗ କରି ଅରଣ୍ୟକୁ ଚାଲିଯିବି ।’

ଏହା ଶୁଣି କପିଳ କହିଲେ, "ଯେ ଜିତେନ୍ଦ୍ରିୟ ନୁହେଁ, ସେ ବନକୁ ଗଲେ ମଧ୍ୟ ଦୁଃଖର ହୁଏ । ଯେ ସକଳ ଇନ୍ଦ୍ରିୟ ଜୟ କରିଥାଏ, ସେ ଗୃହସ୍ଥ ହେଲେହେଁ ତପସ୍ୟାରେ ସିଦ୍ଧି ଲାଭ କରେ । ବୀତରାଗ ଓ ପୁଣ୍ୟ-ପଥ-ପ୍ରବୃତ୍ତ ବ୍ୟକ୍ତି ପକ୍ଷରେ ଗୃହ ହିଁ ତପୋବନ । ଅଶେଷ ଦୁଃଖ ସହି ଯେକୌଣସି ଆଶ୍ରମରେ ଧର୍ମ ସାଧନ କରିବା ଉଚିତ । ଭେକଧାରୀ ବାସ୍ତବିକ ଧର୍ମ ପରାୟଣ ନୁହେ । 'ସର୍ବ ଭୂତେ ସମତା ହିଁ ଧର୍ମ-ପରିଚୟ ।' କଥିତ ଅଛି— ଯେଉଁ ବ୍ୟକ୍ତି କେବଳ ଜୀବନରକ୍ଷା ପାଇଁ ଖାଦ୍ୟ ଭକ୍ଷଣ କରନ୍ତେ, ସନ୍ତାନ-ଲାଭ ଆଶାରେ ପତ୍ନୀ ସହବାସ କରେ ଏବଂ ସତ୍ୟକଥନ ଉଦ୍ଦେଶ୍ୟରେ ହିଁ ବାକ୍ୟ ବ୍ୟବହାର କରେ, ସେ ସକଳ ପ୍ରକାର ସଂକଟରୁ ଉଦ୍ଧାର ପାଇଥାଏ । ଶ୍ରୀକୃଷ୍ଣ ଯୁଧିଷ୍ଠିରଙ୍କୁ ଉପଦେଶ ଛଳରେ କହିଥିଲେ— 'ହେ ପାଣ୍ଡୁନନ୍ଦନ ! ଆତ୍ମା ଗୋଟିଏ ପବିତ୍ର ନଦୀ—ଦମ ତାହାର ଘାଟ, ସତ୍ୟ ତାହାର ସଲିଳ, ଶୀଳ ତାହାର ତଟ ଏବଂ ସକଳ ଜୀବପ୍ରତି ଅପାର କରୁଣା ହେଉଛି ସେ ନଦୀଜଳର ଊର୍ମିମାଳା । ସେହି ନଦୀରେ ସ୍ନାନ କଲେ ଅନ୍ତରାତ୍ମା ଶୁଦ୍ଧ ହୁଏ— ଅନ୍ୟ ଜଳରେ ନୁହେ ।' ଏହା ମହାଭାରତର ଶାନ୍ତି ପର୍ବରେ ଲେଖାଅଛି । ଉଦ୍‌ଯୋଗ ପର୍ବରେ ଧୃତରାଷ୍ଟ୍ରଙ୍କୁ ବିଦୁର ମଧ୍ୟ ଠିକ୍ ଏହି ଉପଦେଶ ଦେଇଅଛନ୍ତି । ବିଶେଷତଃ ଜୀବ ମାନଙ୍କେ ଜନ୍ମ, ଜରା, ରୋଗ, ଶୋକ ଓ ମରଣକ୍ଲେଶର ଅଧୀନ । ଏ ଅସାର ସଂସାରରେ ଲେଶମାତ୍ର ସୁଖ ଶାନ୍ତି ନାହିଁ । ଜଗତରେ ପ୍ରକୃତ ସୁଖୀ ସେ, ଯେ ଏହି ଭବ-ବନ୍ଧନ ଛିନ୍ନ କରିପାରେ । ସଂସାର ଦୁଃଖପୂର୍ଣ୍ଣ, ଏଣୁ ଦୁଃଖ ହିଁ ଅନୁଭୂତ ହୋଇଥାଏ । ହୃଦୟର ଯେତେବେଳେ ଦୁଃଖର ଶାନ୍ତି ହୁଏ, ସେତେବେଳେ ତାହାର ନାମ ହୁଏ ସୁଖ ।"

ଏହି ସମସ୍ତ ଉପଦେଶ ସତ୍ତ୍ୱେ କୌଣ୍ଡିନ୍ୟ ପୁତ୍ରଶୋକରେ ନିତାନ୍ତ ଅଧୀର ହୋଇ, ମୋତେ ଶାପ ଦେଇ କହିଲେ—'ତୁ ଆଜଠାରୁ ଭେକମାନଙ୍କର ବାହନ ହେବୁ ।' କପିଳ ତାଙ୍କୁ କହିଲେ, 'ତୁମର ହୃଦୟ ବର୍ତ୍ତମାନ ଅତ୍ୟନ୍ତ ଶୋକାକୁଳ । ଉପଦେଶ ନିଷ୍ଫଳ ହେବାର କଥା । ତଥାପି ସାଧୁ କର୍ତ୍ତବ୍ୟ ତାହା ଶୁଣ । ଦୁଃଖ ଦୂର କରିବାର ବାସନା ହେଉ ଥାଏ, ତାହାହେଲେ ସଙ୍ଗ ପରିହାର କର । ଏକାବେଳକେ ସଙ୍ଗ ଗୁଡ଼ୁ ନ ପାରିଲେ ସାଧୁ ସଙ୍ଗ କର । ସାଧୁସହବାସରୂପ ମହୌଷଧ ସମସ୍ତ ପ୍ରକାର ରୋଗ ବିନଷ୍ଟ କରିଥାଏ ।'

ଏହି ଉପଦେଶାମୃତ ପାନରେ କ୍ରମେ କୌଣ୍ଡିନ୍ୟଙ୍କର ଶୋକାନଳ ଶାନ୍ତ ହେଲା । ସେ ଯଥାବିଧି ଦଣ୍ଡଗ୍ରହଣ ପୂର୍ବକ ସଂସାର ତ୍ୟାଗ କଲେ । ତଦବଧି ମୁଁ ଉକ୍ତ ବ୍ରହ୍ମଶାପରେ ମଣ୍ଡୂକ-ମାନଙ୍କୁ ପୃଷ୍ଠରେ ବହନ କରିବା ସକାଶେ ଏହି ସ୍ଥାନରେ ରହିଅଛି ।

ପରେ ସେହି ମଣ୍ଡୂକ 'ଜାଲପାଦ ନାମକ' ଭେକ-ରଜା ନିକଟରେ ଯାଇ ଏହି ସମ୍ବାଦ ଦେଲା । ଜାଲପାଦ ସେଠାକୁ ଆସି ସର୍ପ ପୃଷ୍ଠରେ ଆରୋହଣ କଲା । ସର୍ପ ତାହାକୁ ପିଠିରେ ଧରି ବିବିଧ ଗମନ କୌଶଳ ଦେଖାଇ ଭ୍ରମଣ କରିବାକୁ ଲାଗିଲା । ପର ଦିନ ମଣ୍ଡୂକରଜା ସର୍ପକୁ ଚାଲିବାରେ ଅକ୍ଷମ ଦେଖି ପଚାରିଲା, "ଆଜ ତୁମେ ଏତେ ଧୀର ଭାବରେ ଚାଲୁଛ କାହିଁକି ?"

ସର୍ପ—ମହାରାଜ, ମୁଁ ଅନାହାରରେ ଦୁର୍ବଳ ହୋଇଅଛି ।

ଜାଲପାଦ—ମୁଁ ଆଦେଶ କରୁଛି, ତୁମେ କେତୋଟି ଭେକ ଭକ୍ଷଣ କର ।

ସର୍ପ—ଆପଣଙ୍କର ଏହି ମହାପ୍ରସାଦ ମୋର ଶିରୋଧାର୍ଯ୍ୟ ।

ସର୍ପ ଅତ୍ୟନ୍ତ ଆଶା ଓ ସନ୍ତୋଷରେ ଅଭିଭୂତ ହୋଇ କ୍ରମେ ବେଙ୍ଗମାନଙ୍କୁ ଖାଇବାକୁ ଲାଗିଲା । କ୍ରମଶଃ ସେହି ସରୋବରର ସମସ୍ତ ମଣ୍ଡୂକ ନିଃଶେଷ ହୋଇଗଲେ । ଶେଷରେ ସର୍ପ ଜାଲପାଦକୁ ମଧ୍ୟ ଉଦରସ୍ଥ କଲା ।

———

ମେଘବର୍ଣ୍ଣ—ମହାରାଜ ! ବର୍ତ୍ତମାନ ଏ ସମସ୍ତ ପୌରାଣିକ କଥାର ଆଲୋଚନା କରିବା ଅନୁଚିତ । ରାଜା ହିରଣ୍ୟଗର୍ଭ ସର୍ବପ୍ରକାରେ ସନ୍ଧିର ଉପଯୁକ୍ତ ପାତ୍ର । ଅତଏବ ମୋ ମତରେ ତାଙ୍କ ସହିତ ସନ୍ଧି କରିବା କର୍ତ୍ତବ୍ୟ ।

ଚିତ୍ରବର୍ଣ୍ଣ—ତୁମେ ଏପରି କଣ କହୁଚ ? ଆମେମାନେ ତାହାକୁ ପରାସ୍ତ କରିଅଛୁଁ । ସେ ଯଦି ମୋର ଆଜ୍ଞାଧୀନ ହୋଇ ମୋ ସେବାରେ ନିଯୁକ୍ତ ରହେ, ତାହାହେଲେ ସେ ନିସ୍ତାର ପାଇବ—ନଚେତ୍ ଯୁଦ୍ଧ କରିବାକୁ ହେବଇ ହେବ ।

ଇତ୍ୟବସରରେ ଜମ୍ବୁଦ୍ୱୀପରୁ ଶୁକ ଆସି ସମ୍ବାଦ ଦେଲା—"ମହାରାଜ, ସିଂହଳଦ୍ୱୀପର ରାଜା ସାରସ ବର୍ତ୍ତମାନ ସସୈନ୍ୟ ଜମ୍ବୁଦ୍ୱୀପ ଅବରୋଧ କରିଛନ୍ତି ।" ଏହି ସମ୍ବାଦରେ ରାଜା ଅତ୍ୟନ୍ତ ବ୍ୟସ୍ତ, ବିଚଳିତ ହୋଇ ଉଠିଲା । ଗୃଧ୍ର ମନ୍ତ୍ରୀ ମନେ ମନେ କହିବାକୁ ଲାଗିଲା, "ମନ୍ତ୍ରିନ୍ ଚକ୍ରବାକ ! ଧନ୍ୟ ତୁମର ବୁଦ୍ଧି କୌଶଳ ।" ରାଜା ଅତ୍ୟନ୍ତ କ୍ରୁଦ୍ଧ ହୋଇ ସେହି ସାରସରାଜାକୁ ସମୂଳ ଉନ୍ମୂଳିତ କରିବା କାରଣ ଆଦେଶ କଲା ।

ଏହା ଶୁଣି ମନ୍ତ୍ରୀ ଦୂରଦର୍ଶୀ ହାସ୍ୟ କରି କହିଲ,—'ବଡ଼-ଲୋକମାନେ ପରର ଅନିଷ୍ଟ କମ୍ବା ଇଷ୍ଟ କରିବାକୁ ଯାଇ ତାହା କଦାପି ବାକ୍ୟରେ ପ୍ରକାଶ କରନ୍ତି ନାହିଁ । ଶରତ୍କାଳର ମେଘଗର୍ଜ୍ଜନ ପରି, ବଚନରେ ବଢ଼ାଇ କହିବା ନିଷ୍ଫଳ ହିଁନା ! ଏକ ସମୟରେ ଅନେକ ରାଜାଙ୍କ ସଙ୍ଗେ ଯୁଦ୍ଧ କରିବା ଚତୁର ରାଜାର କାର୍ଯ୍ୟ ନୁହେ । ଭୟଙ୍କର ସର୍ପ ବି ଅନେକ କୀଟଦ୍ୱାରା ନିହତ ହୋଇପାରେ । ମହାରାଜ । ସନ୍ଧିସ୍ଥାପନ ନ କରି ଏଠାରେ କେବେ ଯାଇପାରିବେ ନାହିଁ । ଗଲେ, ଶତ୍ରୁମାନେ ଆମମାନଙ୍କୁ ପୃଷ୍ଠଭାଗରୁ ଆକ୍ରମଣ କରିବେ । ଶୁଣନ୍ତୁ,—

"ପ୍ରକୃତ ଘଟନା ଅଗ୍ରେ ନ କରି ସନ୍ଧାନ,
ଅଗ୍ରେ ହିଁ ଯେ ଜନ କୋପେ ହୁଏ ହତଜ୍ଞାନ;
ସେ ଜନ ନକୁଳ-ଶୋକେ ବ୍ରାହ୍ମଣ ସମାନ,
ଅବଶେଷେ ଅନୁତାପେ ହୁଏ ମ୍ରିୟମାଣ ।"

ଚିତ୍ରବର୍ଣ୍ଣ—କପରି ?

ଦୂରଦର୍ଶୀ—

## ବ୍ରାହ୍ମଣ ଓ ନକୁଳ

ଉଜ୍ଜୟିନୀ ନଗରରେ ମାଧବ ନାମକ ଜଣେ ବ୍ରାହ୍ମଣ ଥିଲେ । ତାଙ୍କ ସଂସାରରେ ତାଙ୍କର ପତ୍ନୀ ଓ ଗୋଟିଏ ଶିଶୁ ପୁତ୍ର ଭିନ୍ନ ଆଉ କେହି ନଥିଲେ ।

ଦିନେ ବ୍ରାହ୍ମଣୀ ଶିଶୁ ସନ୍ତାନଟିର ରକ୍ଷଣାର୍ଥ ବ୍ରାହ୍ମଣଙ୍କୁ ଘରେ ରହିବାକୁ କହି, ସ୍ନାନ କରି ଗଲେ । ଇତି ମଧ୍ୟରେ ରାଜାଙ୍କର

ପାର୍ବଣ ଶ୍ରାଦ୍ଧର ଦାନ ଗ୍ରହଣ ସକାଶେ ମାଧବ ଆହୂତ ହେଲେ । ରାଜ-ନିମନ୍ତ୍ରଣ ପାଇ ବ୍ରାହ୍ମଣ ନିଜ ଦାରିଦ୍ର୍ୟକୁ ନେଇ ଭାବିଲେ, "ଯଦି ଶୀଘ୍ର ନ ଯାଏଁ, ତାହାହେଲେ ଅନ୍ୟ କୌଣସି ବ୍ରାହ୍ମଣ ଯାଇ ଏହି ଦାନ ଗ୍ରହଣ କରିବ । କଥିତ ଅଛି—ଆଦାନ, ପ୍ରଦାନ ଇତ୍ୟାଦି କାର୍ଯ୍ୟ ଅବିଳମ୍ବେ କରିବା ବାଞ୍ଛନୀୟ । ଏ ସମସ୍ତ କାର୍ଯ୍ୟରେ ଯେତିକି କାଳକ୍ଷେପ କରାଯାଏ, ସେତିକି କ୍ଷତି ହେବାର କଥା । କିନ୍ତୁ ମୁଁ ଚାଲିଗଲେ ଏଠାରେ ଶିଶୁକୁ ରକ୍ଷା କରିବ କିଏ ? ହେଉ । ମୋର ଏହି ନେଉଳଟିକୁ ମୁଁ ବହୁ ଦିନ ଧରି ନିଜ ସନ୍ତାନ ଭଳି ପାଳନ କରି ଆସୁଛି । ଏହାକୁହିଁ ଏହି କାର୍ଯ୍ୟରେ ନିଯୁକ୍ତ କରିଦିବି ।

ଏହା ସ୍ଥିର କରି ବ୍ରାହ୍ମଣ ତାଙ୍କର ନକୁଳକୁ ଶିଶୁ ସନ୍ତାନର ରକ୍ଷା କାର୍ଯ୍ୟରେ ନିଯୁକ୍ତ କରି ରାଜପ୍ରାସାଦକୁ ଗଲେ । କିୟତ୍‌କ୍ଷଣ ପରେ ନକୁଳ ଦେଖିଲା, ଗୋଟିଏ କାଳସର୍ପ ସେହି ଶିଶୁ ନିକଟକୁ ଧୀରେ ଧୀରେ ଆସୁଅଛି । ସେ ସେହିକ୍ଷଣି ଧାଇଁଯାଇ ସର୍ପଟିକୁ ଖଣ୍ଡ ଖଣ୍ଡ କରି ପକାଇଲା ।

ମାଧବ ରାଜଦାନ ଗ୍ରହଣ କରି ଘରକୁ ବାହୁଡ଼ିବା ମାତ୍ରକେ ନକୁଳ ଧାଇଁଯାଇ ତାଙ୍କ ପଦତଳେ ବିଲୁଣ୍ଠିତ ହେବାକୁ ଲାଗିଲା । ନକୁଳର ରକ୍ତାକ୍ତ ମୁଖ ଓ ପଦ ଦେଖି ବ୍ରାହ୍ମଣ ସ୍ଥିର କଲେ, ସେ ନିଶ୍ଚୟ ତାଙ୍କର ଶିଶୁ ପୁତ୍ରକୁ ମାରି ଖାଇଅଛି । ଅତଏବ ସେ ହଠାତ୍ ନକୁଳର ପ୍ରାଣ ସଂହାର କରିଦେଲେ । ପରେ ଯେତେବେଳେ ଦେଖିଲେ, ଶିଶୁଟି ନିରାପଦ ଓ ଧୀର ସ୍ଥିର ଭାବରେ ଶୋଇଅଛି ଏବଂ ଶିଶୁର ଶଯ୍ୟା ପାର୍ଶ୍ୱରେ ଗୋଟାଏ ମୃତ କାଳସର୍ପ ପଡ଼ିଅଛି, ସେତେବେଳେ ସେ ନିଦାରୁଣ ଅନୁତାପରେ ଦଗ୍ଧ ହେବାକୁ ଲାଗିଲେ ।

———

'ଅତଏବ ମହାରାଜ ! ପ୍ରଥମରେ ପ୍ରକୃତ ଘଟଣା ସନ୍ଧାନ ନ କରି, ହଠାତ୍ କ୍ରୁଦ୍ଧ ହୁଅନ୍ତୁ ନା । ଜଗତରେ ସେହି ବ୍ୟକ୍ତି ସୁଖୀ ହୁଏ, ଯେ କାମ, କ୍ରୋଧ, ଲୋଭ ଇତ୍ୟାଦି ଷଡ୍‌ରିପୁ ତ୍ୟାଗ କରେ ।

ଚିତ୍ରବର୍ଣ୍ଣ—ତାହାହେଲେ ମନ୍ତ୍ରି ! ସନ୍ଧି କରିବାକୁ ତୁମେ କଣ ସ୍ଥିର ସଂକଳ୍ପ କରିଅଛ ?

ମନ୍ତ୍ରୀ—ହଁ ମହାରାଜ ! ଏହାହିଁ ମୋର ସ୍ଥିର ସଂକଳ୍ପ । ସର୍ବଦା କର୍ତ୍ତବ୍ୟ ମନେ ରଖି ସେ ବିଷୟରେ ଫଳାଫଳ ଚିନ୍ତା କରିବା, ପୁନଃପୁନ ଭାବରେ ନିର୍ଣ୍ଣୟ କରି ତାହା ଦୃଢ଼ ପଣରେ ସିଦ୍ଧ କରିବା ଏବଂ ଗୂଢ଼ ବିଷୟ କେବେ ପ୍ରକାଶ ନ କରିବା ସୁଚତୁର ମନ୍ତ୍ରୀର କାର୍ଯ୍ୟ । ଭଲ ମନ୍ଦ, ପୂର୍ବାପର ବିବେଚନା ନ କରି କୌଣସି ବିଷୟ ପ୍ରକାଶ କଲେ ବିପଦ ଘଟେ । ସୁବିଚାର ସହ ସକଳ କାର୍ଯ୍ୟ କରିବା ଲୋକକୁ ଲକ୍ଷ୍ମୀ ଆଲିଙ୍ଗନ କରିଥାନ୍ତି । ଅତଏବ ମହାରାଜ, ମୋ ମନ୍ତ୍ରଣାରେ ଆପଣଙ୍କର ଯଦି ଆସ୍ଥା ଥାଏ, ତାହାହେଲେ ଶୀଘ୍ର ସନ୍ଧି କରି ନିଜ ରାଜ୍ୟକୁ ଫେରନ୍ତୁ । ସାମ, ଦାନ, ଭେଦ, ଯୁଦ୍ଧ—ଏ ଚାରୋଟି କୌଶଳ ମଧ୍ୟରେ ସାମ ହିଁ ସକଳ ସିଦ୍ଧିର ପ୍ରଧାନ କାରଣ । ସକଳ ସମୟରେ ସାମ ଅବଲମ୍ବନ କରିବା ରାଜାର କର୍ତ୍ତବ୍ୟ ।

ଚିତ୍ରବର୍ଣ୍ଣ—ଏତେ ଶୀଘ୍ର ସନ୍ଧି କରିବା ସମ୍ଭବ ?

ମନ୍ତ୍ରୀ—ହଁ ମହାରାଜ, ସମ୍ଭବ—ଶୀଘ୍ର କରିଦେବା ଉଚିତ । କାରଣ ଦୁର୍ଜ୍ଜନ ମୃତ୍ତିକା ଘଟ ପରି ଅତି ସହଜରେ ଭାଙ୍ଗିପଡ଼େ—ଆଉ ମିଳିତ ହୁଏ ନାହିଁ । ସୁଜନ କିନ୍ତୁ ସ୍ୱର୍ଣ୍ଣ ଘଟ ଭଳି ବିଶେଷ ପରିଶ୍ରମରେ ଭଗ୍ନ ହୁଏ—ଅତି ସହଜରେ ମିଳିତ

ହୋଇଯାଏ । ଅଜ୍ଞକୁ ତୁଷ୍ଟ କରିବା ପାଇଁ ଅଳ୍ପ ପରିଶ୍ରମ ଆବଶ୍ୟକ ଏବଂ ଆହୁରି କମ୍ ପରିଶ୍ରମରେ ବିଜ୍ଞ ବ୍ୟକ୍ତିକୁ ସନ୍ତୁଷ୍ଟ କରାଯାଇ ପାରେ । କିନ୍ତୁ ଯେଉଁ ବ୍ୟକ୍ତି ଅଳ୍ପମାତ୍ର ଜ୍ଞାନରେ ମତ୍ତ ହୋଇଥାଏ, ତାହାକୁ ସ୍ୱୟଂ ବ୍ରହ୍ମା ବି ବୁଝାଇ ତୁଷ୍ଟ କରି ପାରିବେ ନାହିଁ । ଅଳ୍ପ ବିଦ୍ୟା ଭୟଙ୍କର—ସେଥିରେ ଗର୍ବ ହିଁ ବଢ଼ିଥାଏ ।

ବିଶେଷତଃ ରଜା ହିରଣ୍ୟଗର୍ଭ ଅତ୍ୟନ୍ତ ଧର୍ମପରାୟଣ ଏବଂ ତାଙ୍କ ମନ୍ତ୍ରୀ ସକଳ ଜ୍ଞାନରେ ବିଭୂଷିତ । ସେମାନେ ସେମାନଙ୍କର କାର୍ଯ୍ୟକଳାପରୁ ମୁଁ ଏହା ବୁଝିପାରୁଛି—ମେଘବର୍ଣ୍ଣ ମଧ୍ୟ ଠିକ୍ ଏହା କହିଅଛନ୍ତି । ଯେଉଁ ସ୍ଥଳରେ ଅନ୍ୟର କାର୍ଯ୍ୟ ସ୍ୱଚକ୍ଷୁରେ ଦେଖିବାର ସମ୍ଭାବନା ନ ଥାଏ, ସେହି ସ୍ଥଳରେ ଫଳ ଦୃଷ୍ଟିରେ ହିଁ ତାହାର କାର୍ଯ୍ୟ ବୁଝି ନେବାକୁ ହୁଏ । ମେଘବର୍ଣ୍ଣଙ୍କ ପ୍ରତି ତାଙ୍କର ସରଳ ବ୍ୟବହାରରୁ ସ୍ପଷ୍ଟରୂପେ ବୁଝାଯାଉଛି ଯେ, ରଜା ରାଜହଂସ ଅତ୍ୟନ୍ତ ସଦାଶୟ ।

ଚିତ୍ରବର୍ଣ୍ଣ—ତାହାହେଲେ ଉତ୍ତର-ପ୍ରତ୍ୟୁତ୍ତରରେ ଆଉ ପ୍ରୟୋଜନ ନାହିଁ— ତୁମର ସଙ୍କଳ୍ପ ଅନୁସାରେ କାର୍ଯ୍ୟ କର ।

ଏ ବିଷୟରେ ଯାହା କର୍ତ୍ତବ୍ୟ ତାହା କରିବାକୁ ଉଦ୍ୟତ ହୋଇ ମହାମନ୍ତ୍ରୀ ଗୃଧ୍ର ଦୁର୍ଗ ମଧ୍ୟରେ ଯାଇ ପ୍ରବେଶ କଲା ।

ଏଣେ ସେହି ଗୁପ୍ତଚର ବକ ଆସି ରଜା ହିରଣ୍ୟଗର୍ଭଙ୍କୁ ଜଣାଇଲା, "ମହାରାଜ, ମହାମନ୍ତ୍ରୀ ଗୃଧ୍ର ସନ୍ଧି ସ୍ଥାପନ କରିବା ଉଦ୍ଦେଶ୍ୟରେ ଆପଣଙ୍କ ନିକଟକୁ ଆସିଛନ୍ତି ।"

ରାଜହଂସ—ମେଘବର୍ଣ୍ଣ ପରି ପୁଣି କେହି ବୋଧହୁଏ ଆମର ସର୍ବନାଶ କରିବା ନିମନ୍ତେ କପଟବନ୍ଧୁ ରୂପେ ଆସିଛି ।

ସର୍ବଜ୍ଞ ମନ୍ତ୍ରୀ ହସି କହିଲା, "ମହାରାଜ ! ଆଉ ସେପରି ଆଶଙ୍କା କରନ୍ତୁ ନାହିଁ; କାରଣ ଏହି ଦୂରଦର୍ଶୀ ମନ୍ତ୍ରୀ ଅତ୍ୟନ୍ତ ମହାତ୍ମା । ସ୍ୱଳ୍ପ ବୁଦ୍ଧି ଲୋକେ କେବେ କେବେ ଆଦୌ ଆଶଙ୍କା କରନ୍ତି ନାହିଁ, କେବେ ଅବା ସକଳ ସ୍ଥାନରେ ଆଶଙ୍କା କରିଥାନ୍ତି । ଦେଖନ୍ତୁ, ଥରେ ଗୋଟାଏ ହଂସ ରାତ୍ରିକାଳରେ ସ୍ୱଚ୍ଛ ସରୋବରର ଜଳରେ ଶୁଭ୍ର ତାରକାବିମ୍ବ ଦେଖି, ତାହା ଶୁଭ୍ର କୁମୁଦପୁଷ୍ପ ମନେକରି ଖାଇବାକୁ ଗଲା । ଏପରି ପ୍ରତାରିତ ହୋଇ ସେ ଦିବସରେ ପ୍ରକୃତ କୁମୁଦ ପାଖକୁ ବି ଆଉ ଗଲା ନାହିଁ । ଯେ କୁହୁକରେ ପଡ଼ି ଥରେ କପଟ ପ୍ରତି ବିଶ୍ୱାସ କରି ପ୍ରବଞ୍ଚିତ ହୁଏ, ସେ ଅକପଟ ବା ସତ୍ୟକୁ ମଧ୍ୟ ବିଶ୍ୱାସ କରିବାକୁ ଭୟ କରେ । ଯେଉଁ ଲୋକ ଦୁର୍ଜ୍ଜନକୁ ବିଶ୍ୱାସ କରି ବଞ୍ଚିତ ହୁଏ, ସୁଜନଠାରେ ମଧ୍ୟ ତାହାର ଆଉ ପ୍ରତ୍ୟୟ ହୁଏ ନାହିଁ । ଅତ୍ୟୁଷ୍ଣ କ୍ଷୀରରେ ଯେଉଁ ଶିଶୁର ହାତ ଥରେ ପୋଡ଼ି ଯାଇଥାଏ, ସେ ଶୀତଳ ଦଧି ବି ଖାଇବାକୁ ଭୀତ ହୁଏ । ଅତଏବ ମହାରାଜ ! ସେହି ମନ୍ତ୍ରୀଶ୍ରେଷ୍ଠଙ୍କର ଯଥାବିଧି ସମ୍ମାନ ସକାଶେ ରତ୍ନାଦି ଉପହାରସାମଗ୍ରୀ ସଜ୍ଜିତ କରି ରଖନ୍ତୁ ।"

ଅନନ୍ତର ଗୃଧ୍ର ମନ୍ତ୍ରୀର ସତ୍କାର ପାଇଁ ସମସ୍ତ ଆୟୋଜନ କରା ହେଲା । ଚକ୍ରବାକ ଦୁର୍ଗଦ୍ୱାର ନିକଟରେ ଯାଇ ଗୃଧ୍ର ମନ୍ତ୍ରୀଙ୍କ ଅତ୍ୟନ୍ତ ଆଦର ସହିତ ଅଭ୍ୟର୍ଥନା କରି ତାହାଙ୍କୁ ଚିତ୍ରବର୍ଣ୍ଣ ସମ୍ମୁଖକୁ ନେଲା । ଗୃଧ୍ର ରାଜଦତ୍ତ ଆସନରେ ଆସୀନ ହେବା ପରେ, ଚିତ୍ରବର୍ଣ୍ଣ ପ୍ରସନ୍ନ ମୁଖରେ ବିନମ୍ର ସହକାରେ କହିଲା, "ମନ୍ତ୍ରିନ୍ ! ଏହି ସ୍ଥାନର ସବୁ ଆପଣଙ୍କ ନିଜର ବୋଲି ମନେ କରିବେ । ନିଜ ଇଚ୍ଛାନୁଯାୟୀ ଏହି ରାଜ୍ୟ ଉପଭୋଗ କରନ୍ତୁ ।"

ରାଜା ରାଜହଂସ କହିଲେ—'ବାସ୍ତବିକ ଏସବୁ ଆପଣଙ୍କର ନିଜର ମନେ କରନ୍ତୁ ।'

ଦୂରଦର୍ଶୀ ଗୃଧ୍ର—ଏଥିରେ ସନ୍ଦେହ କଣ ? କିନ୍ତୁ ବର୍ତ୍ତମାନ କଥା-ଆଡ଼ମ୍ବରରେ ସମୟ କଟାଇବା ଅନୁଚିତ । ଧନ-ରତ୍ନ-ଦାନରେ ଲୁବ୍ଧକୁ, ବିନୟ-ପ୍ରକାଶରେ ଦୃପ୍ତକୁ, ମନଭୁଲା ଖୁସି କଥାରେ ମୂର୍ଖକୁ, ଯଥାର୍ଥ କଥନରେ ଜ୍ଞାନୀକୁ, ସଦ୍‌ଭାବରେ ନିଜ ବନ୍ଧୁଗଣଙ୍କୁ, ସମ୍ଭ୍ରମରେ ଜ୍ଞାତିବର୍ଗଙ୍କୁ, ମାନ ଓ ଧର୍ମବଳରେ ପରିବ୍ରାଜକାଙ୍କୁ ଏବଂ ଦାକ୍ଷିଣ୍ୟଦ୍ୱାରା ଅନ୍ୟାନ୍ୟ ଲୋକଙ୍କୁ ବଶ କରିବା ଆବଶ୍ୟକ । ଅତଏବ ଏହିକ୍ଷଣି ସନ୍ଧିସ୍ଥାପନ ପୂର୍ବକ ନିଶ୍ଚିନ୍ତ ଲାଭ କରନ୍ତୁ । କାରଣ ମହାରାଜ ଚିତ୍ରବର୍ଣ୍ଣ ଅତି ପ୍ରତାପଶାଳୀ ।

ଚକ୍ରବାକ—କପଟ ସନ୍ଧି କରିବାକୁ ହେବ କହନ୍ତୁ ।

ରାଜହଂସ—ସନ୍ଧି କେତେ ପ୍ରକାର ?

ଗୃଧ୍ର—ଯେତେବେଳେ ରାଜା ପ୍ରବଳ ଶତ୍ରୁଦ୍ୱାରା ଆକ୍ରାନ୍ତ ହୋଇ, କୌଣସି ଉପାୟ ଖୋଜି ପାଏ ନାହିଁ, ସେତେବେଳେ ତାହାର କାଳବ୍ୟାଜ କରି ଶତ୍ରୁ ସହିତ ସନ୍ଧି ସ୍ଥାପନ କରିବା ଉଚିତ । ସନ୍ଧିତତ୍ତ୍ୱରେ ପଣ୍ଡିତମାନେ ଷୋହଳ ପ୍ରକାର ସନ୍ଧି ନିର୍ଦ୍ଦେଶ କରିଅଛନ୍ତି, ଯଥା :—

୧-କପାଳ, ୨-ଉପହାର, ୩-ସନ୍ତାନ, ୪-ସଙ୍ଗତ, ୫-ଉପନ୍ୟାସ, ୬-ପ୍ରତିକାର, ୭-ସଂଯୋଗ, ୮-ପୁରୁଷାନ୍ତର, ୯-ଅଦୃଷ୍ଟନର, ୧୦-ଆଦିଷ୍ଟ, ୧୧-ଆତ୍ମାଦିଷ୍ଟ, ୧୨-ଉପଗ୍ରହ, ୧୩-ପରିକ୍ରୟ (ପରିକ୍ରୟ), ୧୪-ଉଚ୍ଛିନ୍ନ, ୧୫-ପରଭୂଷଣ ଓ ୧୬-ସ୍କନ୍ଧୋପନେୟ ।

ଯେଉଁ ସନ୍ଧିଦ୍ୱାରା ଉଭୟ ପକ୍ଷରେ ତୁଲ୍ୟ ଫଳ ଲାଭ ହୁଏ, ସେହି ସନ୍ଧିକୁ 'କପାଳ' କୁହାଯାଏ । ଧନ ଇତ୍ୟାଦି ଦାନରେ ଯେଉଁ ସନ୍ଧି ସ୍ଥାପିତ ହୁଏ, ତାହାକୁ 'ଉପହାର' ସନ୍ଧି ବୋଲଯାଏ । କନ୍ୟା ପ୍ରଦାନରେ ସ୍ଥାପିତ ସନ୍ଧିକୁ 'ସନ୍ତାନ' କହନ୍ତି । ଯଦ୍ୱାରା ଦୁଇ ପକ୍ଷ ଚିର ସଖ୍ୟରେ ଆବଦ୍ଧ ହୁଅନ୍ତି, ତାହାର ନାମ 'ସଙ୍ଗତ' ସନ୍ଧି । ବିପଦରେ ବା ସମ୍ପଦରେ, ସକଳ ସମୟରେ କୌଣସି ପ୍ରକାରେ ଏହି ସନ୍ଧି ଭଗ୍ନ ହୁଏ ନାହିଁ । କାଞ୍ଚନ ଯେପରି ସର୍ବଶ୍ରେଷ୍ଠ ଧାତୁ, 'ସଙ୍ଗତ' ସେପରି ସର୍ବଶ୍ରେଷ୍ଠ ସନ୍ଧି । ସୁତରାଂ ସନ୍ଧିବିଚକ୍ଷଣ ପଣ୍ଡିତଗଣ 'ସଙ୍ଗତ'କୁ 'କାଞ୍ଚନ' ଆଖ୍ୟା ଦେଇ ଅଛନ୍ତି ।

ସ୍ୱକାର୍ଯ୍ୟ ସିଦ୍ଧିକଲ୍ପେ ଯେଉଁ ସନ୍ଧି ହୋଇଥାଏ, ତାହା 'ଉପନ୍ୟାସ' ନାମରେ ଖ୍ୟାତ ।

'ପୂର୍ବେ ମୁଁ ଏହି ଲୋକର ଉପକାର କରିଛି, ଏଣୁ ଏ ମୋର ଉପକାର କରିବ'—ଏହି ଅଭିପ୍ରାୟରେ ବା ଆଶାରେ ଯେଉଁ ସନ୍ଧି ସ୍ଥାପିତ ହୁଏ, ତାହା 'ପ୍ରତିକାର' ନାମରେ ପରିଚିତ । 'ରାମଚନ୍ଦ୍ର ବାଳିକୁ ବଧ କରି ସ୍ତ୍ରୀ ଓ ରାଜ୍ୟ ଉଦ୍ଧାର କରି ସୁଗ୍ରୀବଙ୍କୁ ଦେବେ ଏବଂ ସୁଗ୍ରୀବ ରାବଣ-ବଧର ଉପାୟ କରି ସୀତା ଉଦ୍ଧାର କରି ରାମଚନ୍ଦ୍ରଙ୍କୁ ଦେବେ । ଦୁହିଁଙ୍କ ମଧ୍ୟରେ ଏହି ପଣରେ ସଖ୍ୟ ସ୍ଥାପନ ଓ ସନ୍ଧିବନ୍ଧନ ହୋଇଥିଲା । ମୁଁ ଯେପରି ଏହାର ଉପକାର କରିବି, ଏ ମଧ୍ୟ ସେପରି ମୋର

ଉପକାର କରିବ'—ଏପରି ଭାବି ଉପକାର-ପ୍ରତ୍ୟାଶାରେ ସନ୍ଧି କଲେ ତାହାକୁ ବି 'ପ୍ରତିକାର' କହନ୍ତି ।

ଏକ କାର୍ଯ୍ୟରେ ସିଦ୍ଧିଲାଭ ସକାଶେ ଉଭୟ ପକ୍ଷ ପରସ୍ପର ମିଳିତ ହୋଇ ଯେଉଁ ସୁଦୃଢ଼ ସନ୍ଧିବନ୍ଧନ କରିଥାନ୍ତି, ତାହାକୁ 'ସଂଯୋଗ' କୁହାଯାଏ ।

'ଉଭୟ ପକ୍ଷର ସମସ୍ତ ମହାଯୋଦ୍ଧା ମିଳିମିଶି ମୋର କାର୍ଯ୍ୟ ସାଧନ କରନ୍ତୁ',—ଏପରି ପଣରେ ଯେଉଁ ସନ୍ଧି ହୁଏ ତାହା 'ପୁରୁଷାନ୍ତର' । 'ତୁମେ ଏକା ମୋର କାର୍ଯ୍ୟ ସାଧନ କରିବ, କିନ୍ତୁ ତୁମେ ମୋର ସାହାଯ୍ୟ ପ୍ରାର୍ଥନା କରିବ ନାହିଁ,'— ଏହି ପଣରେ ଶତ୍ରୁ ଯେଉଁ ସନ୍ଧି କରେ, ସେହି ସନ୍ଧିର ନାମ 'ଅଦୃଷ୍ଟ ନର' ।

'ଆଦିଷ୍ଟ' ନାମକ ସନ୍ଧିରେ ରାଜା ଶତ୍ରୁକୁ ନିଜ ଭୂମିର କେତେକାଂଶ ଦେଇ ସନ୍ଧି ସ୍ଥାପନ କରେ । 'ଆତ୍ମାଦିଷ୍ଟ'ରେ ନିଜ ସେନା ଦ୍ୱାରା ସନ୍ଧି ସ୍ଥାପିତ ହୋଇଥାଏ ।

ସର୍ବସ୍ୱ ଅର୍ପଣଦ୍ୱାରା ପ୍ରାଣରକ୍ଷଣରେ 'ଉପଗ୍ରହ' ସନ୍ଧି ସମ୍ପାଦିତ ହୁଏ । ଯେଉଁ ସନ୍ଧିରେ ନିଜର ସମସ୍ତ ରାଜ-କୋଷ କିମ୍ବା ତାହାର କିୟଦଂଶ ଦେଇ ପ୍ରବଳ ଶତ୍ରୁ ହାତରୁ ଅବଶିଷ୍ଟ ଅଧିକାର ରକ୍ଷା କରାଯାଏ, ତାହା 'ପରିକ୍ରୟ' (ପରିକ୍ରୟ) ସନ୍ଧି ନାମରେ କଥିତ । 'ଉଚ୍ଛିନ୍ନ' ତାହାକୁ କୁହାଯାଏ ଯେଉଁ ସନ୍ଧିରେ ସାର ଭୂମି ସବୁ ଛାଡ଼ି ଦେବାକୁ ହୋଇଥାଏ ।